

# ଜହ୍ନମାମୁଁ

ସେପ୍ଟେମ୍ବର ୧୯୮୪



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୦୦

ବାର୍ଷିକ ମୂଲ୍ୟ : ୨୪-୦୦

# ଜହ୍ନ ମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

ସଂସ୍କୃତ ପୃଥିବୀର ସର୍ବପ୍ରାଚୀନ ଭାଷା । ଏ ଭାଷା ଯେତିକ ଶ୍ରୁତିମଧୁର, ସେତିକ ଭାବଗମ୍ଭୀର । ଏ ଭାଷା କପରି ଭାବରେ ସୃଷ୍ଟି ହେଲା, ତା'ର କୌଣସି ଇତିହାସ ନାହିଁ । କୁହାଯାଏ, ମଣିଷ ଏହା ଦେବତାମାନଙ୍କ ଆଶୀର୍ବାଦରୁ ପାଇଛି । ଆନନ୍ଦର ବିଷୟ ବର୍ତ୍ତମାନ "ଜହ୍ନମାମୁଁ" ଅନ୍ୟ ବାରଗୋଟି ଭାଷା ସାଙ୍ଗକୁ ସଂସ୍କୃତରେ ମଧ୍ୟ ପ୍ରକାଶ ପାଉଛି । ଇଂରାଜୀ ସଂସ୍କରଣ ତ ନିଶ୍ଚୟ ଦେଖୁଥିବ !

## ଅମରବାଣୀ

ଶ୍ଳୋକାର୍ଥେନ ପ୍ରବକ୍ଷ୍ୟାମି ଯଦୁକ୍ତମ୍ ଗ୍ରନ୍ଥକୋଟିଭିଃ ।
ପରୋପକାରଃ ପୁଣ୍ୟାୟ, ପାପାୟ ପରପୀଡନମ୍ ॥

[ବହୁ ଗ୍ରନ୍ଥରେ କୁହାଯାଇଥିବା ତତ୍ତ୍ୱକୁ ମୁଁ ସରଳ ଶ୍ଳୋକରେ କହିଦେଉଛି: ପରୋପକାର ପୁଣ୍ୟ; ପରର ଅନିଷ୍ଟ ପାପ ।]

---

ବର୍ଷ : ୫ ସେପ୍ଟେମ୍ବର ୧୯୮୪ ଅଙ୍କ : ୩

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ



## ଗୃହପାଳିତ ପଶୁପକ୍ଷୀ

ଘରେ କୁକୁର, ବିଲେଇ ବା ଚଢ଼େଇଟିଏ ଅଛି ତ? ଥିଲେ ଭଲ। ସୁଇଡେନ୍‌ର ଗୋଥେନ୍‌ବାର୍ଗ ସହରରେ ପଶୁ ଓ ମଣିଷଙ୍କ ସମ୍ପର୍କ ବିଷୟରେ ନିକଟରେ ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ସେଠାରେ କେତେକ ଗବେଷକ କହିଛନ୍ତି ଯେ ଘରେ ପଶୁପକ୍ଷୀ ପାଳନ କରିବା ଦ୍ୱାରା ଆମର ହୃଦ୍‌ଯନ୍ତ୍ର ଭଲ କାମ କରେ ଓ ରକ୍ତ-ଚଳାଚଳ ମଧ୍ୟ ଭଲ ଭାବରେ ହୋଇଥାଏ। ବିଶେଷତଃ ଆଧୁନିକ ଯାନ୍ତ୍ରିକ ପରିସ୍ଥିତିରେ ବସବାସ କରୁଥିବା ମଣିଷଙ୍କ ସକାଶେ ମନ-ସ୍ତାତ୍ତ୍ୱିକ ଦୃଷ୍ଟିରୁ ମଧ୍ୟ ଘରେ ପଶୁପକ୍ଷୀପାଳନ ଅତ୍ୟନ୍ତ ହିତକର।

## ଭୂମିକମ୍ପର ପୂର୍ବାଭାଷ




ଏଚ. ଏନ୍. ଶ୍ରୀବାସ୍ତବ ନାମକ ଜଣେ ଭାରତୀୟ ବିଶେଷଜ୍ଞ "ଭୂମିକମ୍ପର ସୂଚନା" ନାମକ ବହିଟିଏ ପ୍ରକାଶ କରିଛନ୍ତି। ସେଥିରେ ଭୂମିକମ୍ପ ପୂର୍ବରୁ ପଶୁପକ୍ଷୀମାନେ କିଭଳି ତାହା ଜାଣିପାରି ଅସ୍ୱାଭାବିକ ବ୍ୟବହାର କରନ୍ତି, ସେ ବିଷୟରେ ଅନେକ ତଥ୍ୟ ରହିଛି।

ଯଦି ସବୁଆଡ଼େ ମୂଷାମାନେ ବିଲରେ ପ୍ରବେଶ କରୁଥିବା, ବିଲେଇମାନେ ଘର କୋଣରେ ପଶିବା ଓ ଘୋଡ଼ାମାନେ ଅସ୍ତବ୍ୟସ୍ତ ହେବାର ଦେଖାଯିବ, ତେବେ ଭୂମିକମ୍ପ ଆସନ୍ନପ୍ରାୟ ବୋଲି ବୁଝିବାକୁ ହେବ। ୧୮୯୧ ମସିହାର ନୋବି ଭୂକମ୍ପ ପୂର୍ବରୁ ଜାପାନର ନାଗୋୟା ସହରର ସବୁ ମୂଷା (ସେମାନେ ସର୍ବଦା ଜଳଖିଆ ଦୋକାନମାନଙ୍କରେ ବୁଲୁଥାନ୍ତି) ଲୁଚି ଯାଇଥିଲେ।

୧୯୬୯ ମସିହାର ଜୁଲାଇ ୧୯ ତା: ଦିନ ଚୀନ୍‌ର ତିଏନ୍‌ସିନ୍ ଅଞ୍ଚଳରେ ଯେଉଁ ପ୍ରବଳ ଭୂମିକମ୍ପ ହୋଇଥିଲା, ତହିଁ ପୂର୍ବରୁ କୁକୁଡ଼ାମାନେ ସେମାନଙ୍କ ଘରେ ପଶିବାକୁ ଅମଙ୍ଗ ହେଲେ; ଚିଡ଼ିଆଖାନାର ବାଘମାନେ ବଡ଼ ଅସ୍ତବ୍ୟସ୍ତ ହେଲେ; ହରିଣମାନେ ଖିଆପିଆ ଛାଡ଼ିଦେଲେ। ୧୯୫୫ ମସିହାରେ ଯୁଗୋସ୍ଲାଭିଆ ଭୂମିକମ୍ପ ପୂର୍ବରୁ ପକ୍ଷୀମାନେ କାନ୍ଦିବା ଭଳି ଚିତ୍କାର କରିଥିଲେ

## ଜାଣନ୍ତି କି?

୧. ପ୍ରଥମ ଶତାବ୍ଦୀରେ ଭାରତରେ ଖ୍ରୀଷ୍ଟ ଧର୍ମ ପ୍ରଚାର କରିଥିଲେ କିଏ?

୨. କେଉଁ ଧର୍ମ ୨୪ ଜଣ ତୀର୍ଥଙ୍କରଙ୍କୁ ଗୁରୁ ବୋଲି ମାନେ?

୩. ବିହାରରେ ପଞ୍ଚମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ କେଉଁ ବିଶ୍ୱ-ବିଦ୍ୟାଳୟ ବିଖ୍ୟାତ ଥିଲା?

୪. ପାର୍ସୀମାନଙ୍କର ପବିତ୍ର ଗ୍ରନ୍ଥର ନାମ କ'ଣ?

୫. ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀରେ ରୋମରେ ଥିଲେ ବିଖ୍ୟାତ ବକ୍ତା କିଏ ଥିଲେ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଯଥା ରାଜା ତଥା ପ୍ରଜା

ଅନେକ ଦିନ ତଳର କଥା । ବିଜୟଗଡ଼ ରାଜ୍ୟ ବ୍ୟାପି ଅରାଜକତା ବ୍ୟାପିଥାଏ । ଦେଶରେ ଯେତିକ ଚୋର, ଗୁଣ୍ଡାମି ବଢ଼ିଥାଏ, ଜନସାଧାରଣ ବି ସେତିକି ମାତ୍ରାରେ ବିଶୃଙ୍ଖଳ ବ୍ୟବହାର କରୁଥାନ୍ତି । ଯଦି ଚୋରଟିଏ ଧରା ପଡ଼ିଗଲା, ତେବେ ତାକୁ ସିପାହୀମାନଙ୍କ ଜିମା ନଦେଇ ନିଜେ ନିଜେ ଚିହଟ ଦେଉଥାନ୍ତି । ବିଚାରାଳୟରୁ କୌଣସି ବିଷୟରେ କୌଣସି ନିଷ୍ପତ୍ତି ଘୋଷଣା କରାଗଲେ ମଧ୍ୟ ତାକୁ ଲୋକେ ପ୍ରାୟ ମାନୁ ନଥାନ୍ତି ।

ଏଣେ ଜିନିଷପତ୍ରର ଦରଦାମ ଯେ ଖାଲି ବଢ଼ି ଚାଲିଥାଏ, ସେତିକି ନୁହେଁ, ବେପାରୀମାନେ ଭେଜାଲ୍ ଜିନିଷ ଛଡ଼ା ଭଲ ଜିନିଷ ବିକିବା ପ୍ରାୟ ଛାଡ଼ି ଦେଇଥାନ୍ତି ।

ବିଜୟଗଡ଼ର ରାଜା ବୀରଭଦ୍ର ଏ ପାଇଁ ବଡ଼ ଚିନ୍ତିତ ହୋଇ ରହିଥାନ୍ତି ।

ବିଜୟଗଡ଼ର ପଡ଼ୋଶୀ ରାଜ୍ୟ ପ୍ରତାପ ନଗରର ଅବସ୍ଥା କିନ୍ତୁ ପୂରା ବିପରୀତ । ସେ ରାଜ୍ୟରେ କୌଣସି ବିଶୃଙ୍ଖଳା ନଥାଏ । ଲୋକେ ସୁଖ ଶାନ୍ତିରେ ଜୀବନ ଯାପନ କରୁଥାନ୍ତି । ରାଜ୍ୟର ସମୃଦ୍ଧି ମଧ୍ୟ ବଢ଼ି ଚାଲିଥାଏ ।

ପ୍ରତାପନଗରରେ ଏହା କିପରି ସମ୍ଭବପର ହୋଇଛି, ଏକଥା ପ୍ରତ୍ୟକ୍ଷ ଭାବରେ ଜାଣିବା ନିମନ୍ତେ ବିଜୟଗଡ଼ର ରାଜା ବୀରଭଦ୍ର ଯାଇ ସେ ରାଜ୍ୟରେ ପହଞ୍ଚିଲେ । ପ୍ରତାପନଗରରାଜା ଶଙ୍ଖସେନ ବୀରଭଦ୍ରଙ୍କୁ ସ୍ୱାଗତ କଲେ ।

ଏକାନ୍ତରେ ରାଜା ବୀରଭଦ୍ର ଶଙ୍ଖସେନଙ୍କୁ ପଚାରିଲେ, "ବନ୍ଧୁ ! ତମ ରାଜ୍ୟରେ ସବୁ କଥା ଏପରି ସୁରୁଖୁରୁରେ ଚାଲିଛି କିପରି ? ଏହାର ରହସ୍ୟ କ'ଣ ?"

"ବସୁନ୍ଧର"



"ଏହାର ରହସ୍ୟ ହେଲା ମୋ ପ୍ରଜାମାନେ ବଡ଼ ମହତ୍। ସେମାନେ ସାଧୁ ଭାବରେ ଜୀବନ ଯାପନ କରିବାକୁ ଭଲ ପାଆନ୍ତି। ପରସ୍ପର ସୁଖ ଦୁଃଖରେ ଭାଗୀ ହୁଅନ୍ତି।" ଶଙ୍ଖସେନ କହିଲେ।

"ଏ ରାଜ୍ୟର ପ୍ରଜାମାନଙ୍କ ସହ ମିଶିବାକୁ ଇଚ୍ଛା ହେଉଛି।" ରାଜା ବୀରଭଦ୍ର କହିଲେ।

"ସେଥିରେ ଅସୁବିଧା କ'ଣ? ଚାଲ, ଦୁହେଁ ଛଦ୍ମବେଶରେ ବାହାରି ଯିବା।" ଶଙ୍ଖସେନ ପ୍ରସ୍ତାବଦେଲେ।

ସେହି ସିଦ୍ଧାନ୍ତ ଅନୁସାରେ ଦୁଇ ରାଜା ଛଦ୍ମବେଶରେ ପରଦିନ ରାଜ୍ୟ ଭ୍ରମଣରେ ବାହାରି ପଡ଼ିଲେ। କିନ୍ତୁ ଅସୁବିଧା ହେଲା, ଶଙ୍ଖସେନଙ୍କ ଛଦ୍ମବେଶ ସତ୍ତ୍ୱେ ଅଧିକାଂଶ ସ୍ଥାନରେ ପ୍ରଜାମାନେ ତାଙ୍କୁ ଚିହ୍ନି ପକାଇଲେ ଓ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ। ବୀରଭଦ୍ରଙ୍କୁ ଅବଶ୍ୟ କେହି ଚିହ୍ନିବାର ପ୍ରଶ୍ନ ନଥିଲା।

ରାଜା ଶଙ୍ଖସେନ ଯଦି କୌଣସି ଦୋକାନରୁ କିଛି ଜିନିଷ କିଣିବାକୁ ମନକଲେ, ତେବେ ଦୋକାନୀ ସଙ୍ଗେ ସଙ୍ଗେ ସେ ଜିନିଷ ନଅରକୁ ପଠାଇବାର ବ୍ୟବସ୍ଥା କରୁଥାଏ, କିନ୍ତୁ ରାଜା କୌଣସି ମତେ ତାକୁ ଦାମ୍ ନେବାକୁ ସମ୍ମତ କରାଇ ପାରୁ ନଥାନ୍ତି। "ମହାରାଜ! ରାଜା ପ୍ରଜାଙ୍କ ଭିତରେ ବେପାର ଚାଲି ନ ପାରେ। ଆମେ ଆପଣଙ୍କୁ କୌଣସି ଜିନିଷ ଭେଟି ଦେବାର ସୁଯୋଗ ପାଇଲେ ଧନ୍ୟ ମନେ କରୁଁ!"

ରାଜା ବୀରଭଦ୍ର ପ୍ରତାପନଗରର ପ୍ରଜାମାନଙ୍କର ସୌଜନ୍ୟ ଓ ରାଜଭକ୍ତି ଦେଖି ଆଶ୍ଚର୍ଯ୍ୟ ହେଲେ। ବିଦାୟ ନେବା ପୂର୍ବରୁ ସେ ରାଜା ଶଙ୍ଖସେନଙ୍କୁ କହିଲେ, "ଆପଣଙ୍କ ପ୍ରଜାମାନେ ବାସ୍ତବିକ ମହତ୍।"

ନିଜ ରାଜ୍ୟକୁ ଫେରି ଆସି ସେ ଛଦ୍ମବେଶ ପକାଇ ରାଜ୍ୟ ବୁଲି ଦେଖିବାକୁ ବାହାରିଲେ। କୌଣସି ଗୋଟିଏ ସ୍ଥାନରେ ବି ଲୋକେ ତାଙ୍କୁ ଚିହ୍ନି ପାରିଲେ ନାହିଁ।

ସେ ଗୋଟିଏ ଦୋକାନରୁ କିଛି ଜିନିଷ କିଣିବାକୁ ଚାହିଁବାରୁ ଦୋକାନୀ ଚଢ଼ା ଦାମ ବତାଇଲା। ସେ କହିଲେ, "ଯଦି ରାଜା ଏ

ଜିନିଷଟି ପସନ୍ଦ କରି ନଅରକୁ ନେବାକୁ ମନ କରନ୍ତେ, ତେବେ?" ଦୋକାନୀ ବେପରୁଆ ରୀତିରେ ଜବାବ୍ ଦେଲା, "ତେବେ ମୁଁ ଏହାର ଦୁଇଗୁଣ ଦାମ କହନ୍ତି!"

ରାଜା ବୀରଭଦ୍ର ହତାଶ ହୋଇ ନଅରକୁ ଲେଉଟି ଆସିଲେ। ମନ୍ତ୍ରୀଙ୍କୁ ଡକାଇ ସେ କହିଲେ, "ପ୍ରତାପନଗରର ପ୍ରଜାମାନେ ଏତେ ଭଦ୍ର ଓ ମହତ୍। ଆମ ପ୍ରଜାମାନେ ମୋଟେ ସେପରି ନୁହନ୍ତି। ଏହାର କାରଣ କ'ଣ?"



ମନ୍ତ୍ରୀ ଟିକିଏ ଚିନ୍ତା କରି କହିଲେ, "ମହାରାଜ! ଆମ ପ୍ରଜାମାନଙ୍କ ଭିତରୁ ଶହେ ସରଳ ଦାୟିତ୍ୱବାନ୍ ପ୍ରଜା ବାଛି ସେମାନଙ୍କୁ କିଛିଦିନ ସକାଶେ ପ୍ରତାପନଗରର ଭିନ୍ନ ଭିନ୍ନ ସ୍ଥାନରେ ବୁଲି ଲୋକମାନଙ୍କ ସମ୍ପର୍କରେ ଆସିବାର ସୁଯୋଗ ଦିଆଯାଉ। ସେମାନେ ପ୍ରତାପନଗରର ପ୍ରଜାମାନଙ୍କ ବ୍ୟବହାର ଦ୍ୱାରା ପ୍ରଭାବିତ ହେବେ ନିଶ୍ଚୟ।"

ରାଜା ଏ ପ୍ରସ୍ତାବ ଗ୍ରହଣ କରି ଶହେ ଲୋକ ବାଛି ପ୍ରତାପନଗର ପଠାଇଲେ। ଛଅମାସ ପରେ ସେମାନେ ଲେଉଟି ଆସିଲେ। ସେମାନଙ୍କ ମୁଖପାତ୍ରଙ୍କୁ ରାଜା ପଚାରିଲେ, "କ'ଣ ଦେଖିଲ? ପ୍ରତାପନଗରର ଲୋକେ ସାଧୁ ଓ ଶୃଙ୍ଖଳିତ, ଅଥଚ ଆମ ଲୋକେ ସେପରି ନୁହନ୍ତି କାହିଁକି?"

ମୁଖପାତ୍ର କହିଲେ, "ପ୍ରଭୁ! ମୁଁ ଯଦି ସତ କହିବି, ତେବେ ଆପଣଙ୍କର ଓ ବହୁ ବଡ଼ ବଡ଼ ରାଜକର୍ମଚାରୀଙ୍କର ଅପ୍ରିୟ ହେବି। ମୋର ବିପଦ ହୋଇପାରେ।"

"ସେଭଳି ଆଶଙ୍କା କରନାହିଁ। ମୁଁ ଅଭୟ ଦେଉଛି।" ରାଜା କହିଲେ।

"ମହାରାଜ! ତେବେ ଶୁଣନ୍ତୁ। ପ୍ରତାପନଗରର ରାଜା ଓ ମୁଖ୍ୟ କର୍ମଚାରୀମାନେ ବଡ଼ ମହତ୍ ଓ ସାଧୁ।" ମୁଖପାତ୍ର କହିଲେ।

ରାଜା ବିରକ୍ତ ହୋଇ କହିଲେ, "ପାଗଳ! ଖୋଦ୍ ରାଜା ଶଙ୍ଖସେନ ମୋତେ କହିଛନ୍ତି କି ତାଙ୍କ ପ୍ରଜାମାନେ ମହତ୍!"

"ମହାରାଜ! ତାହାହିଁ ତାଙ୍କ ମହତ୍ତ୍ୱର ପ୍ରମାଣ। ସେ ଏତେ ବିନୟୀ ଯେ ରାଜ୍ୟର ଶୃଙ୍ଖଳା ଓ ସମୃଦ୍ଧି ପାଇଁ ସେ ବାହାଦୁରୀ

ନେବାକୁ ଚାହାନ୍ତି ନାହିଁ । ତାଙ୍କର ସେ ବିନୟ ଗୁଣ ଦ୍ୱାରା ପ୍ରଜାମାନେ ଅନୁପ୍ରାଣିତ । ସେମାନେ ସବୁ ଭଲ କଥା ପାଇଁ ରାଜାଙ୍କ ପ୍ରଶଂସା କରୁଛନ୍ତି ।" ମୁଖପାତ୍ର କହିଲେ ।

"ମୁଁ କ'ଣ ଅସାଧୁ ?" ରାଜା ପଚାରିଲେ ।

"ମହାରାଜ! ଆପଣ ଅତ୍ୟନ୍ତ ସାଧୁ । କିନ୍ତୁ ଆପଣ ରାଜକାର୍ଯ୍ୟରେ ବିଶେଷ ମନଯୋଗୀ ନୁହନ୍ତି । ଫଳରେ ଆପଣଙ୍କର ଅଧିକାଂଶ କର୍ମଚାରୀ ଅସାଧୁ ହୋଇ ଯାଇଛନ୍ତି । ପ୍ରଜାମାନଙ୍କ ସହ ଆପଣଙ୍କର ତ ସିଧାସଳଖ ସମ୍ପର୍କ ନାହିଁ, ସେମାନଙ୍କର ଅଛି । ସେମାନଙ୍କ ଆଚାର ବ୍ୟବହାର, ମତଲବ୍, ସ୍ୱାର୍ଥପରତା ଦ୍ୱାରା ପ୍ରଜାମାନେ ପ୍ରଭାବିତ । ରାଜା ଶଙ୍ଖସେନଙ୍କୁ ଧୋକା ଦେଇ କୌଣସି କର୍ମଚାରୀ କିଛି ଅସାଧୁ କାମ କରିବାକୁ ଅକ୍ଷମ ।"

"ତମେ ଯାହା କୁହ ପଛେ, ପ୍ରତାପନଗରର ପ୍ରଜାମାନେ ବୁଦ୍ଧିମାନ୍ । ଗୋଟାଏ ଉଦାହରଣ ଦେଖ । ଶଙ୍ଖସେନ ଛଦ୍ମବେଶରେ ବୁଲିଲେ ବି ଅଧିକାଂଶ ସ୍ଥାନରେ ପ୍ରଜାମାନେ ତାଙ୍କୁ ଚିହ୍ନି ଦେଲେ । ମୋ ରାଜ୍ୟରେ ମୁଁ ଛଦ୍ମବେଶ ପକାଇ ବୁଲିଲି । ଜଣେ ବି ଚିହ୍ନିଲେ ନାହିଁ ।" ରାଜା ବୀରଭଦ୍ର କ୍ଷୋଭ କରି କହିଲେ ।

"ମହାରାଜ! ସୁନାଚେକା ଯଦି ମାଟିଗୋଡ଼ ସହିତ ମିଶି ପଡ଼ିଥିବ, ତେବେ ବି ତାହା ଦୃଷ୍ଟିକୁ ଆସିଯିବ । ରାଜା ଶଙ୍ଖସେନ ତାଙ୍କ ପ୍ରଜାଙ୍କ ଆଖିରେ ସୁନାଚେକା ଭଳି…" ମୁଖପାତ୍ର ଏତିକି କହି ଚୁପ୍ ରହିଲେ ।

ରାଜା ଅନେକ ସମୟ ନୀରବ ରହି କହିଲେ, "ଆଚ୍ଛା, ଯାଅ ।" ସେମାନେ ଚାଲିଯିବା ମାତ୍ରେ ରାଜା ମନ୍ତ୍ରୀଙ୍କୁ ଡାକି କହିଲେ, "ବହୁତ ଭୁଲ ହୋଇ ଯାଇଛି । ଏହି ମୁହୂର୍ତ୍ତରୁ ମୁଁ ରାଜା ନୁହେଁ, ମୋ ପ୍ରଜାଙ୍କ କର୍ମଚାରୀ ମାତ୍ର ।" ଏହାପରେ ସେ ଅସାଧୁ କର୍ମଚାରୀମାନଙ୍କୁ ନିକାଲି ଦେଲେ । ନିଜେ ନିରଳସ ଭାବରେ ରାଜକାର୍ଯ୍ୟ ବୁଝିଲେ । ବର୍ଷକ ଭିତରେ ରାଜ୍ୟର ଅବସ୍ଥା ବଦଳିଗଲା ।





[ ୧୫ ]

[ସମୁଦ୍ରରେ ଦୁଇ ଜାହାଜ ଭିତରେ ସଂଘର୍ଷ ହୋଇ ଦୁଇଟିଯାକ ଜାହାଜ ବୁଡ଼ିଯିବା ଉତ୍ତାରୁ ପିଙ୍ଗଳ କୌଣସି ମତେ ଆସି କୂଳରେ ଲାଗିଲା । ସେଠାରେ ନବାବ୍‌ଙ୍କର ଜଣେ ପଦସ୍ଥ କର୍ମଚାରୀ ହସନ୍ ସହ ତା'ର ପରିଚୟ ହେଲା । ସେ ମରୁ ଅଞ୍ଚଳରେ ଜଣେ ଡାକୁ ସର୍ଦ୍ଦାରକୁ ଧରିବା ଉଦ୍ଦେଶ୍ୟରେ ହସନ୍ ବାହାରିଥାଏ । ପିଙ୍ଗଳକୁ ଧରି ହସନ୍ ଓ ତାଙ୍କ ସୈନ୍ୟଦଳ ଗୋଟାଏ କଲ୍ଲା ଆଡ଼େ ବାହାରିଲେ । ତା'ପରେ...]

କଲ୍ଲାର ପରିବେଶ ଜନମାନବଶୂନ୍ୟ ଦେଖି ହସନ୍ ସର୍ଦ୍ଦାର ଆଶ୍ଚର୍ଯ୍ୟ ହେଲା । ପିଙ୍ଗଳ ଲକ୍ଷ୍ୟ କରି ଦେଖିଲା, ସେ କଲ୍ଲା ବହୁତ ପୁରାତନ ଏବଂ ଖୁବ୍ ବଡ଼ । ଆଖପାଖରେ ଅନ୍ୟ କୌଣସି ଘରଦ୍ୱାର କାହିଁ ଆଖିରେ ପଡ଼ିଲେ ନାହିଁ ।

କଲ୍ଲା ପାଖରେ ଗୋଟାଏ ପାହାଡ଼ । ପାହାଡ଼ ଉପରୁ ଗୋଟାଏ ଝରଣା ଝରି ଆସୁଥାଏ । ଝରଣାର ଦୁଇ କଡ଼ରେ ଦୁଇଟି ବଡ଼ ବଡ଼ ଖଜୁରୀ ଗଛ । କଲ୍ଲା କାନ୍ଥରେ ଗଛଗୁଛ ଉଠିଥାନ୍ତି ଓ ଲତା ମାଡ଼ିବାକୁ ଆରମ୍ଭ କରିଥାନ୍ତି । କେହି କଲ୍ଲାର ଯତ୍ନ ନେଉଥିବା ଭଳି ମନେ ହେଲା ନାହିଁ ।

"ତମେ ଯେଉଁ କଲ୍ଲା କଥା କହୁଥିଲ, ଇଏ ସେହି କଲ୍ଲା କି ?" ପିଙ୍ଗଳ ପଚାରିଲା ।




"ହୁଏତ ଦସ୍ୟୁଦଳପତି ଭୈରବନାଥ କିଲ୍ଲା ଉପରେ ଆକ୍ରମଣ କରି ସବୁ ସୈନିକଙ୍କୁ ବନ୍ଦୀ କରିଛି। ସମସ୍ତଙ୍କୁ ମାରି ପକାଇ ନଥିଲେ ରକ୍ଷା। ବୋଧହୁଏ କିଲ୍ଲା ଭିତରକୁ ଗଲେ ଯାଇ ସବୁ କଥା ଜଣାଯିବ!" ପିଙ୍ଗଳ କହିଲା।

"ତୁମ କଥା ଠିକ୍ ହୋଇପାରେ। କିନ୍ତୁ ଡ଼ାକୁଦଳର କେହି ବି ଏଠାରେ ଥିଲଭଳି ତ ମନେ ହେଉନାହିଁ!" ହସନ ନିଜ ଓଟ ବୁଲାଇ ପାଚେରି ପାଖରେ ଏପଟ ସେପଟ ହୋଇ ଅବସ୍ଥା ଲକ୍ଷ୍ୟ କରୁଁ କରୁଁ କହିଲା।

ପିଙ୍ଗଳ ତା' ଓଟକୁ ହସନ ପାଖକୁ ନେଇଯାଇ କହିଲା, "ସର୍ଦ୍ଦାର! ବାହାରୁ କିଛି ବୁଝା ପଡ଼ିବ ନାହିଁ। ସଂଘର୍ଷ ହୋଇଥିଲେ ଭିତରକୁ ଗଲେ ଜଣା ପଡ଼ିଯିବ।"

"ଆମର ଦୁଇଶହ ସୈନିକଙ୍କୁ ମାରି ପକାଇବା ଅଥବା ବନ୍ଦୀ କରିବା ସହଜ ହୋଇ ନଥିବ। ସେପାଇଁ ଡାକୁଦଳକୁ ଭୀଷଣ ଲଢ଼େଇ କରିବାକୁ ପଡିଥିବ।" ହସନ ସର୍ଦ୍ଦାର କହିଲା। ଦୁହେଁ କିଲ୍ଲାର ମୁଖ୍ୟ ଦ୍ୱାର ପାଖକୁ ଆସି ଯାଇଥାନ୍ତି।

ଦ୍ୱାର ଭିତରୁ ବନ୍ଦ ଥିବାର ଜଣାଗଲା। ଦ୍ୱାର ପାଖରେ ସଂଘର୍ଷର କୌଣସି ଚିହ୍ନ ନଥାଏ।

ପିଙ୍ଗଳର ବିସ୍ମୟର ଅନ୍ତ ନ ଥାଏ। ଯଦି ଦୁଇଶହ ସୈନିକ ଏଠାରେ ରହିଥିଲେ,

"ହଁ, ହଁ। ଏହାହିଁ ସେ କିଲ୍ଲା। ଦେଖ, କିଲ୍ଲା ପାଖରୁ ଗୋଟାଏ ରାସ୍ତା ପାହାଡ଼ ଉପରକୁ ଉଠି ଯାଇଛି। ତେହେରାନ୍ ଆଡ଼କୁ ଏହାହିଁ ରାଜପଥ। ବାଟ ମଝିରେ ଏ କିଲ୍ଲା ବଣିକ-ମାନଙ୍କ ପାଇଁ ବିଶେଷ ସହାୟ। ଡାକୁମାନଙ୍କ ଉପରେ ଆଖି ରଖିବା ପାଇଁ ଏହା ନିର୍ମାଣ କରାଯାଇଥିଲା। ଏଠି ସବୁବେଳେ ଦୁଇଶହ ସୈନିକ ଥାନ୍ତି। ବଣିକ ଓ ଅନ୍ୟ ଯାତ୍ରୀ-ମାନଙ୍କୁ ରକ୍ଷା କରିବା ଓ ଆଶ୍ରୟ ଦେବା ସେମାନଙ୍କ କାମ। କିନ୍ତୁ ଆଶ୍ଚର୍ଯ୍ୟର କଥା, ଜଣକୁ ବି ଦେଖୁ ନାହିଁ।"

ହସନ୍ ଏକଥା କହିସାରିବା ବେଳକୁ ଦୁହେଁ କିଲ୍ଲାର ଦରଜା ପାଖରେ ପହଞ୍ଚି ଯାଇଥିଲେ।

ତେବେ ସେମାନଙ୍କୁ ବନ୍ଦୀ ବା ହତ୍ୟା କରିବା ନିମନ୍ତେ ଡାକୁଦଳଙ୍କୁ ଭୀଷଣ ଯୁଦ୍ଧ କରିବାକୁ ପଡ଼ିଥିବ । ଯୁଦ୍ଧ ହୋଇଥିଲେ ପରିବେଶରୁ ତାହାର ପ୍ରମାଣ ମିଳନ୍ତା । କିଲ୍ଲାର ଦ୍ୱାର ମଧ୍ୟ ଖୋଲା ପଡ଼ିଥାନ୍ତା । ତେବେ କ'ଣ ଦ୍ୱାର ଭିତରୁ ବନ୍ଦ କରି ସମସ୍ତେ ନିଘୋଡ଼ ନିଦରେ ଶୋଇ ପଡ଼ିଲେ ? ଅଥବା ସମସ୍ତେ ଆଖପାଖର କୌଣସି ରମଣୀୟ ସ୍ଥାନକୁ ଭୋଜି କରିବା ପାଇଁ ଚାଲି ଯାଇଥାଇ ପାରନ୍ତି । ହୁଏତ ଯେଉଁ ଜଣେ ସୈନିକ କିଲ୍ଲା ଜଗି ରହିଥିଲା, ତାକୁହିଁ ଡାକୁମାନେ ହତ୍ୟା କରି ସେ ପଥର ଦେହରେ ବାନ୍ଧି ଦେଇଥିଲେ ।



ହଠାତ୍ ହସନ୍ ସର୍ଦ୍ଦାର ହସିଲା । ପିଙ୍ଗଳ ତା' ଆଡ଼େ ଆଶ୍ଚର୍ଯ୍ୟ ହୋଇ ଅନାଇବାରୁ ସେ କହିଲା, "ଆମ ସୈନିକମାନଙ୍କର ପତ୍ତା ନ ମିଳିବାର ଅନ୍ୟ ଏକ କାରଣ ଥାଇପାରେ । ସେ କାରଣକୁ ଅବାସ୍ତବ ବୋଲି ଉଡ଼ାଇ ଦିଆଯାଇ ପାରିବ ନାହିଁ । ସେ କାରଣ କ'ଣ ହୋଇପାରେ ଅନୁମାନ କରି ପାରିବ ?"

ପିଙ୍ଗଳ ନାସ୍ତିସୂଚକ ମୁଣ୍ଡ ହଲାଇଲା ।

"ହୁଏତ ସେମାନେ ପ୍ରଚୁର ମଦ ପିଇ ଚୁର୍ ହୋଇ ଭିତରେ ପଡ଼ିଛନ୍ତି!" ହସନ୍ ପୁଣି ହସି ପକାଇ କହିଲା ।

ପିଙ୍ଗଳ ଏ ଉତ୍ତରରେ ପରିତେ ଗଲା ନାହିଁ । ସେ କହିଲା, "ଯଦି ସେଇଆ ହୋଇଥାନ୍ତା, ତେବେ ଜଣେ ସୈନିକକୁ ହତ୍ୟାକରି ସେଠାରେ କାହିଁକି କିଏ ଶାଗୁଣାପଲ ଉଦ୍ଦେଶ୍ୟରେ ରଖି ଯାଇଥାନ୍ତା ?"

"ସେ ଲୋକଟି ବି ମଦ ପିଇ ବାହାରେ ବୁଲୁଥିବା ଅବସ୍ଥାରେ ଭୈରବ ଦସ୍ୟୁର ଅନୁଚରମାନଙ୍କ କବଳରେ ପଡ଼ିଥିବ ଓ ମରିଥିବ!" ହସନ୍ କହିଲା ।

ପିଙ୍ଗଳ କିଛି କହିଲା ନାହିଁ । ତା'କୁ ଆଶ୍ରୟ ଦେଇଥିବା ହସନ୍ ସର୍ଦ୍ଦାର୍ ସହ ସେ ଯୁକ୍ତି କରିବାକୁ ଚାହୁଁ ନଥିଲା । ସେ ଓଟରୁ ଓହ୍ଲାଇ ପଡି କିଲ୍ଲାର ଦରଜା ଉପରେ ହାତ ରଖି ତାକୁ ଠେଲିବାକୁ ଲାଗିଲା ।

ହସନ୍ ସର୍ଦ୍ଦାର ଉଚ୍ଚ କଣ୍ଠରେ ହସିଲା । ସେ କହିଲା, "ଯଦି ଦ୍ୱାର ଭିତରୁ ବନ୍ଦ ଥିବ,




ତେବେ ତମେ ତାକୁ ଠେଲି ଖୋଲି ପାରିବ ବୋଲି ଭାବୁଛ? ଅନ୍ତତଃ ଯୋଡାଏ ହାତୀ ଯଦି ଏକ ସମୟରେ ଏହାକୁ ଠେଲିବେ, ତେବେ ଯାଇ ସେପଟେ ଥିବା ଅର୍ଗଳ ଭାଙ୍ଗି ପଡିବାର ସମ୍ଭାବନା ଅଛି ।"

କିନ୍ତୁ ହସନ୍ ସର୍ଦ୍ଦାରର ଅଟ୍ଟହାସ୍ୟ ଅଧିକ କ୍ଷଣ ସ୍ଥାୟୀ ହେଲା ନାହିଁ । କବାଟ ଫାଙ୍କ ଦେଇ ଧୂଆଁ ଆସୁଥିବାର ଜଣାଗଲା । ତାହାର କାରଣ କ'ଣ ହୋଇପାରେ, ସେ ବିଷୟରେ ଚିନ୍ତା କରିବା ପାଇଁ ଅବକାଶ ମିଳିଲା ନାହିଁ ।

ହଠାତ୍ ଗୋଟାଏ ପ୍ରଚଣ୍ଡ ବିସ୍ଫୋରଣର ଶବ୍ଦ ହେଲା । ପିଙ୍ଗଳ ଭୁଲିପଡି ପ୍ରାଣମୂର୍ଚ୍ଛା ଦୌଡ଼ିଲା । କବାଟ ଚୂର୍ଣ୍ଣବିଚୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ପ୍ରାଚୀରର ଗୋଟାଏ ଅଂଶ ମଧ୍ୟ ଧୂଳିସାତ୍ ହୋଇଗଲା ।

ଏହା ଏଡ଼େ ଅକସ୍ମାତ୍ ଘଟିଲ ଯେ ପ୍ରଥମେ ପିଙ୍ଗଳ କିଛି ବୁଝି ପାରିଲା ନାହିଁ । ତେବେବି ସେ କିଛି ନ ବୁଝି ମଧ୍ୟ ଦୌଡ଼ିବାକୁ ଆରମ୍ଭ କରି ଦେଇଥିଲା । ଅବଶ୍ୟ ଦୌଡି କରି ଯେ ସେ ରକ୍ଷା ପାଇଥାନ୍ତା, ସେପରି କଥା ନୁହେଁ । କାରଣ ତା ପାଖଦେଇ, ତା କେଶ ସ୍ପର୍ଶ କରି ବିଶାଳ କାଠଖଣ୍ଡ ଓ କିଛି ପଥର ନିକ୍ଷିପ୍ତ ହେଲେ । ସେଥିରୁ ଗୋଟିଏ ଦେହରେ ବାଜିଥିଲେହିଁ ସେ ମରିଥାନ୍ତା !

ପିଙ୍ଗଳ ବୁଝି ପାରିଲା ଯେ କବାଟ ସେପଟେ ବାରୁଦ ଜମାକରି ରଖା ହୋଇଥିଲା । କବାଟ ଠେଲିଦେବା ମାନେ ସେ ବାରୁଦ ସ୍ତୂପରେ ବିସ୍ଫୋରଣ ଘଟିଲା ।

ସେ ଆକସ୍ମିକ ବିସ୍ଫୋରଣ ଯେ ସମସ୍ତଙ୍କୁ ଖାଲି ଚମକାଇ ଦେଲା, ତାହା ନୁହେଁ, ଅନେକେ ଆହତ ହେଲେ ମଧ୍ୟ । ସେ ଅଞ୍ଚଳ ଧୂଆଁରେ ପ୍ରାୟ ଅନ୍ଧକାର ହୋଇଗଲା ।

ତେବେ ଧୂଆଁ ପତଳା ହେବା ପରେ ଯାଇ ପିଙ୍ଗଳ କେତେଦୂର କ୍ଷତ ହୋଇଛି ତାହା ବୁଝିଲା । ଅନେକ ଲୋକଙ୍କ ପୋଷାକ ପୋଡ଼ି ଯାଇଥାଏ । ଅନେକେ ମୂର୍ଚ୍ଛା ହୋଇ ତଳେ ପଡିଥାନ୍ତି । ପିଙ୍ଗଳ ହସନ୍ ସର୍ଦ୍ଦାରକୁ ଖୋଜିବାକୁ ଲାଗିଲା ।




ଅଳ୍ପ ଦୂରରେ ଗୋଟାଏ ଦଗ୍ଧ ଗଛତଳେ ହସନ୍ ପଡ଼ିଥିଲା । ପିଙ୍ଗଳ ଦୌଡ଼ିଯାଇ ତା' ପାଖରେ ବସିପଡ଼ି ପଚାରିଲା, "ବିଶେଷ କିଛି କ୍ଷତି ହୋଇନାହିଁ ତ ?"

"ନା, ଦୈବାତ୍ ବଞ୍ଚି ଯାଇଛି । ବିସ୍ଫୋରଣର ଧକ୍କାରେ ମୁଁ ଏତେଦୂର ଛିଟିକି ପଡିଲି । ଯଦି ଦେହରେ ବାରୁଦ ଲାଗିଥାନ୍ତା, ତେବେ କଥା ସରିଥିଲା ।" ହସନ୍ ସର୍ଦ୍ଦାର କୌଣସି ମତେ ପିଙ୍ଗଳର ହାତ ଧରି ଉଠି ଠିଆ ହେବାକୁ ଚେଷ୍ଟା କରି ଏତକ କହିଲା ।

"ଆମେ ଦୁହେଁ ଭାଗ୍ୟ ବଳରେ ବଞ୍ଚି ଯାଇଛୁଁ ଠିକ୍, କିନ୍ତୁ ଆମ ସୈନିକମାନଙ୍କ ଅବସ୍ଥା ଭଲ ନୁହେଁ ମନେ ହୁଏ । ଅଧାଅଧି ତ ଜ୍ଞାନ ହରାଇ ପଡିଛନ୍ତି । ଅନେକେ ମରିଛନ୍ତି ବୋଲି ମୋର ଧାରଣା । ଅନ୍ୟମାନେ ଆର୍ତ୍ତନାଦ କରୁଛନ୍ତି ।" ପିଙ୍ଗଳ କହିଲା ।

"ଏହା ଦୁଷ୍ଟ ଭୈରବ ଡାକୁର କାମ!" ହସନ୍ ଯନ୍ତ୍ରଣାରେ ମୁହଁ ବିକୃତ କରି କହିଲା ।

"ବାସ୍ତବିକ ମୁଁ କବାଟ ଠେଲି ଭୁଲ୍ କରିଛି ।" ପିଙ୍ଗଳ କହିଲା ।

"ତମେ କିପରି ଜାଣନ୍ତ? ତମେ କବାଟ ନ ଠେଲିଥିଲେ ମୁଁ ଠେଲିଥାନ୍ତି । ଭୈରବ ଡାକୁ ଆମ ଲୋକଙ୍କ ସହ ଲଢ଼େଇ କରି କିଲ୍ଲା ଭିତରେ ସେମାନଙ୍କୁ ଖତମ୍ କରିସାରି ପରେ ଏଠାକୁ ଆମେ ଆସିଲେ ଆମର କି ଦୁର୍ଦ୍ଦଶା ହେବା ନିମନ୍ତେ ଯାହା କରିବାର କରି ଯାଇଛି । ବର୍ତ୍ତମାନ ଆମର ପ୍ରଥମ କାମ ହେବ ଭୈରବ ଡାକୁକୁ ଠାବ କରି ତାକୁ ଖତମ କରିବା ।" ହସନ୍ ସର୍ଦ୍ଦାର କହିଲା ।

ଏହାପରେ ସୁସ୍ଥଥିବା ସୈନିକମାନଙ୍କ ସାହାଯ୍ୟରେ ପିଙ୍ଗଳ ଓ ହସନ୍ ସର୍ଦ୍ଦାର ମୃତ ସୈନିକମାନଙ୍କୁ ପୋଡିଲେ ଓ ଆହତମାନଙ୍କର ଶୁଶ୍ରୂଷା ସକାଶେ ବ୍ୟବସ୍ଥା କଲେ । ତା'ପରେ ଦୁହେଁ ଖୁବ୍ ସାବଧାନରେ କିଲ୍ଲା ଭିତରେ ପ୍ରବେଶ କଲେ ।

ଭିତରେ ପଶି ସେମାନେ ଦେଖିଲେ, ସେମାନଙ୍କ ଅନୁମାନ ସତ୍ୟ । କିଲ୍ଲା ଜଗି ରହିଥିବା ସୈନିକମାନେ ଇତସ୍ତତଃ ମରି



ପଡ଼ିଛନ୍ତି । ମରୁଭୂମିର ପ୍ରଚଣ୍ଡ ତାପରେ ସେମାନଙ୍କ ଦେହ ଶୁଖି ଆସୁଥାଏ, କିନ୍ତୁ ପୋଷାକରେ ରକ୍ତର ଦାଗ ରହିଛି । ସେ ଦୃଶ୍ୟ ଭୟଙ୍କର ।

"ଆମର ଏତେ ସୈନିକଙ୍କୁ କିପରି ଭାବରେ ଶତ୍ରୁ ମାରି ପାରିଲା ତାହା ଆଶ୍ଚର୍ଯ୍ୟର କଥା । କିଲ୍ଲା ବାହାରେ ଲଢ଼େଇ ହୋଇନାହିଁ । ତାହା ବି ରହସ୍ୟମୟ ।" ହସନ୍ ସର୍ଦ୍ଦାର କହିଲା ।

ପିଙ୍ଗଳ ସେକଥା ସମର୍ଥନ କରି ପଚାରିଲା, "ବର୍ତ୍ତମାନ ଆମର କର୍ତ୍ତବ୍ୟ କ'ଣ ?"

ହସନ୍ ସର୍ଦ୍ଦାର ଏ ପ୍ରଶ୍ନର ଉତ୍ତର ଦେଲା ନାହିଁ । ଦୀର୍ଘ ନିଃଶ୍ୱାସ ତ୍ୟାଗ କରି ସେ ଖାଲି କିଲ୍ଲା ଭିତରର ଭୟାବହ ଦୃଶ୍ୟ ଆଡ଼େ ଦୃଷ୍ଟିପାତ କରୁଥାଏ ।

ପିଙ୍ଗଳ ପୁଣି କହିଲା, "ସମୟ ନଷ୍ଟ ନ କରି ସଙ୍ଗେ ସଙ୍ଗେ ହତ୍ୟାକାରୀ ଡାକୁ ଦଳର ସନ୍ଧାନରେ ଆମେ ବାହାରିବା ଉଚିତ । କିନ୍ତୁ ଏ ବିଶାଳ ମରୁଭୂମି ଭିତରେ ସେମାନେ କେଉଁ ଦିଗକୁ ଯାଇଛନ୍ତି, ସେକଥା ଆମେ ଜାଣିବା କିପରି ?"

"ସେଇଟା ସମସ୍ୟା ନୁହେଁ ।" ଏହା କହି ହସନ୍ ସର୍ଦ୍ଦାର କେତେଜଣ ସୈନିକଙ୍କୁ କ'ଣ କହିଲା । ସେମାନେ ଭିନ୍ନ ଭିନ୍ନ ଦିଗକୁ ଚାଲିଗଲେ । ଅଳ୍ପ ସମୟ ଭିତରେ ସେମାନେ ଲେଉଟି ଆସିଲେ ଓ ହସନ୍‌କୁ କୌଣସି ଖବର ଦେଲେ ।

ହସନ୍ ପିଙ୍ଗଳକୁ କହିଲା, "ମରୁଭୂମି ଭିତରେ ଡାକୁଦଳ ଯୁଆଡ଼େ ଗଲେ ବି ସେମାନଙ୍କ ଓଟମାନଙ୍କ ପାଦଚିହ୍ନ ଦେଖି ସେମାନଙ୍କ ଗତିପଥ ଜାଣିହେବ । ବର୍ତ୍ତମାନ ଯାହା ଜଣାପଡୁଛି, ସେମାନେ ଏଠାରୁ କିଛି ଦୂରବର୍ତ୍ତୀ ପାହାଡ଼ ଭିତରେ ଯାଇ ରହିଛନ୍ତି । ହୁଏତ ଆମର ଏ କିଲ୍ଲା ଉପରେ ବିଜୟ ଲାଭ କରି ଖୁସିରେ ମଦ ପିଇ ମଉଜ୍ କରୁଛନ୍ତି !"

ମରୁଭୂମି ବିଷୟରେ ପିଙ୍ଗଳର କୌଣସି ଅଭିଜ୍ଞତା ନଥିଲା । ତେଣୁ ହସନ୍ ସର୍ଦ୍ଦାରର ଅନୁମାନ ଠିକ୍ ହୋଇଥିବ ବୋଲି ତା'ର ଧାରଣା ହେଲା । ସେ କହିଲା, "ଯଦି

ସେଇଆ ହୋଇଥିବ, ତେବେ ଆମେ ଅବିଳମ୍ବେ ସେମାନଙ୍କ ଉଦ୍ଦେଶ୍ୟରେ ଯିବା ଉଚିତ । ସେମାନେ ମାତାଲ ହୋଇ ରହିଥିବା ଅବସ୍ଥାରେହିଁ ସେମାନଙ୍କୁ କାବୁ କରି ସହଜ ହେବ ।"

"ନିଶ୍ଚୟ । ତାହାହିଁ କରିବା ।" ହସନ୍ ସର୍ଦ୍ଦାର ସୈନିକମାନଙ୍କୁ ସେ ପାହାଡ଼ ଅଭିମୁଖେ ଯିବାକୁ ନିର୍ଦ୍ଦେଶ ଦେଲା । ପିଙ୍ଗଳକୁ ଧରି ସେ ପଛେ ପଛେ ଚାଲିଲା ।

ପ୍ରାୟ ଘଣ୍ଟାକ ପରେ ସେମାନେ ପାହାଡ଼ ପାଖରେ ଯାଇ ପହଞ୍ଚିଲେ । ଗୋଟାଏ ଘାଟି ରାସ୍ତା ଧରି ସେମାନେ ଅଗ୍ରସର ହେଲେ ।



ସୈନିକମାନଙ୍କୁ ଦୁଇଭାଗରେ ବିଭକ୍ତ କରି ସେ ପାହାଡ଼ମାଳ ଭିତରେ ଥିବା ଦୁଇଟି ସ୍ଥାନରେ ଡାକୁମାନଙ୍କ ଅନ୍ୱେଷଣ ପାଇଁ ବ୍ୟବସ୍ଥା କରାଗଲା । ହସନ୍ ଓ ପିଙ୍ଗଳ ଏକତ୍ର ରହିଲେ । ଓଟରୁ ଓହ୍ଲାଇ ସେ ଦୁହେଁ ପାଦରେ ପଥର ପରେ ପଥର ଟପି ଅଗ୍ରସର ହେଲେ । ତେବେ ଡାକୁମାନେ ସେ ଅଞ୍ଚଳରେ ଥିବାର କୌଣସି ପ୍ରମାଣ ସେମାନଙ୍କ ଆଖିରେ ପଡୁ ନଥାଏ ।

ହଠାତ୍ ପିଙ୍ଗଳର ମନେ ହେଲା ସେ ଦୂରରୁ କିଛି କଣ୍ଠସ୍ୱର ଶୁଣି ପାରୁଛି । ସେ ପଛରେ ଆସୁଥିବା ସୈନିକମାନଙ୍କୁ ସତର୍କ କରିଦେଇ କାନ ଡେରିଲା ଓ ତା'ପରେ ଧିରେ ଧିରେ ଗୋଟାଏ ପଥର ଉପରେ ଚଢ଼ିଲା ।

ସେ ଦେଖିଲା, ଅଳ୍ପ ଦୂରରେ ଗୋଟାଏ ସମତଳ ସ୍ଥାନରେ ଦଳେ ଲୋକ ନାଚ ଗାନ କରୁଛନ୍ତି । , ଅନ୍ୟମାନେ ତାହା ଉପଭୋଗ କରୁଛନ୍ତି । ସେମାନେ ଯେ ମରୁଦସ୍ୟୁ, ଏଥିରେ ସନ୍ଦେହ ନଥିଲା ।

ହସନ ସର୍ଦ୍ଦାରର ନିର୍ଦ୍ଦେଶରେ ପିଙ୍ଗଳ ତୂରୀ ବଜାଇ ଦେଲା । ସେ ଶବ୍ଦ ଶୁଣିବା ମାତ୍ରେ ଡାକୁଦଳଙ୍କ ନାଚଗାନ ବନ୍ଦ ହୋଇଗଲା । ପଛରେ ଥିବା ସୈନିକମାନେ ମାଡ଼ି ଆସିଲେ ।

"ବର୍ତ୍ତମାନ ଆଉ ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ଆକ୍ରମଣ କରିବା କଥା ।" ପିଙ୍ଗଳ ଏହା କହି ଦସ୍ୟୁ ଦଳ ଆଡ଼କୁ ଗୋଟାଏ ପଥର ଗଡ଼ାଇ ଦେଲା ।

ଶିଳ ତଳକୁ ଗଡ଼ିବା ମାତ୍ରେ ଗୋଟାଏ ତୀର ସାଏଁ କିନା ପିଙ୍ଗଳର କାନ ପାଖଦେଇ ଦୂରକୁ ଚାଲିଗଲା ।

ପିଙ୍ଗଳ ଗୋଟାଏ ବଡ଼ ପଥର ପଛପଟେ ଥିବା ଯୋଗୁଁ ବଞ୍ଚିଗଲା । ପରେ ପରେ ସେ ଦେଖିଲା, ଡାକୁମାନେ ଢାଲ୍ ଓ ତରବାରି ଉଠାଇ ନେଇ ସେମାନଙ୍କ ଆଡ଼େ ଆସୁଛନ୍ତି ।

ସଙ୍ଗେ ସଙ୍ଗେ ହସନ୍ ସର୍ଦ୍ଦାରର ଇଙ୍ଗିତରେ ସୈନିକମାନେ ଡାକୁଦଳ ଉପରେ ପଥର ବର୍ଷା କରିବାକୁ ଲାଗିଲେ । ପଥର ଗଡ଼ାଇ ଗଡ଼ାଇ ସୈନିକଦଳ କ୍ଷିପ୍ର ଗତିରେ ଡାକୁମାନଙ୍କ ଆଡ଼େ ମାଡି ଯାଉଥାନ୍ତି ।

ଦୁଇଆଡୁ ସୈନିକମାନେ ମାଡ଼ି ଆସୁଥିବାର ଦେଖି ଡାକୁମାନେ ଏଣେତେଣେ ପଳାଇବାକୁ ଚେଷ୍ଟା କଲେ । ତେବେ ଯିଏ ସୈନିକମାନଙ୍କ ଆଗରେ ପଡ଼ିଲା, ସିଏ ମଲା । ସୂର୍ଯ୍ୟ ଅସ୍ତ ଯାଉଥାନ୍ତି । ଧାଡିରେ ଅନ୍ଧକାର ଘୋଟି ଆସୁଥାଏ । ପିଙ୍ଗଳ ଡାକୁମାନଙ୍କୁ ଗୋଡ଼ାଇ ଲଢ଼େଇ କରୁଥାଏ ।

ପିଙ୍ଗଳ ଆଖିରେ ଗୋଟାଏ ଗୁଂଫା ପଡ଼ିଲା । ଗୁଂଫା ଭିତରେ ଭୈରବ ଡାକୁ ଥାଇପାରେ ଭାବି ପିଙ୍ଗଳ ଭିତରକୁ ଯିବାକୁ ଉଦ୍ୟତ ହେଉଛି, ସେତିକିବେଳେ ହସନ୍ ସର୍ଦ୍ଦାର ଅଳ୍ପ ଦୂରରୁ ପାଟି କରି କହିଲା, "ପିଙ୍ଗଳ ! ଅନ୍ଧାର ହେଲାଣି । ବର୍ତ୍ତମାନ ଗୁଂଫାରେ ପଶିବା ନିରାପଦ ନୁହେଁ !"

ପିଙ୍ଗଳ ରହିଗଲା । ପରେ ପରେ ଗୁଂଫା ଭିତରୁ ଶୁଣାଗଲା ଗୁରୁ ଗମ୍ଭୀର କଣ୍ଠସ୍ୱର : "କିଏ ଏକି ପିଙ୍ଗଳ ? ଅବନ୍ତୀ ନଗରର ପିଙ୍ଗଳ ନୁହେଁ ତ ?"

ସେ କଣ୍ଠସ୍ୱର ଶୁଣି ପିଙ୍ଗଳ ଚମକି ପଡିଲା । ତାହା ପଦ୍ମପାଦଙ୍କ କଣ୍ଠସ୍ୱର । ସେ ଦେଖିଲା, ଗୋଟାଏ ବିଶାଳ ଶିଳ ପଛରୁ ବାହାରି ଆସୁଛନ୍ତି ଜଣେ ବ୍ୟକ୍ତି । ସେ ହସୁଥିଲେ ।

(କ୍ରମଶଃ)





# ଭାଗ୍ୟର ବିଡ଼ମ୍ବନା

ନିଶା ଗରଜୁଥାଏ । ହୁହାକୁ ହୁହା ଥଣ୍ଡା ପବନ ସାଙ୍ଗକୁ ଅସରାଏ ଲେଖାଏଁ ବର୍ଷା ହୋଇ ଯାଉଥାଏ । ଘଡ଼ଘଡ଼ି ମଝିରେ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ ତଥା ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅର ଝଲକରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ଭୟଭୀତ ନ ହୋଇ ପୁନରାୟ ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତୁମ ସାହସ ଓ ଅଧ୍ୟବସାୟ ସକାଶେ ତୁମେ ବାହାବା ପାଇବା କଥା । କିନ୍ତୁ ତୁମେ ଯେଉଁ କାମ

**ବେତାଳ କଥା**



ହାତକୁ ନେଇଛ, ସେଥିରେ ସଫଳ ହେବ କି ନ ହେବ ତାହା ଭାଗ୍ୟ ଉପରେ ନିର୍ଭର କରେ ସିନା! ମୋ କଥାର ଯଥାର୍ଥ୍ୟ ବୁଝାଇବା ନିମନ୍ତେ ଗୋଟାଏ ଘଟଣା କହୁଛି, ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ ଗପିଲା: ଗୋଟାଏ ବଡ଼ ଗାଁ ମଝିରେ ଥାଏ ଗୋଟାଏ ବରଗଛ। ସେ ବରଗଛ ତଳେ ଜଣେ ଅନ୍ଧ ଭିଖାରି ରହୁଥାଏ।

ଦିନେ ଭିଖାରି ବୁଢ଼ା ଶିବ ମନ୍ଦିର ଆଡ଼େ ବାଡ଼ି ଠୁକୁ ଠୁକୁ କରି ଯାଉଛି, ହଠାତ୍ ଗୋଟାଏ ପଥର ଖୁଣ୍ଟି ତଳେ ପଡ଼ିଗଲା। ଜଣେ ତରୁଣ ଦୌଡ଼ି ଆସି ତାକୁ ଟେକି ଉଠାଇଲା ଓ କହିଲା, "ଏତେ ବଡ଼ ପଥରଟାଏ ପଡ଼ିଛି, ତମେ ଦେଖି ପାରୁନାହିଁ?"

"ପୁଅ! ମୁଁ ଅନ୍ଧ। ତମେ ଏ ଗାଁରେ ନୂଆ ବୋଲି ଏକଥା ଜାଣି ନାହିଁ।" ବୁଢ଼ା ଭିଖାରି କହିଲା।

"ମୁଁ ଏ ଗାଁରେ ନୂଆ ବୋଲି ତମେ ଜାଣିଲ କପରି?" ତରୁଣ ଜଣକ ଆଶ୍ଚର୍ଯ୍ୟ ହୋଇ ପଚାରିଲା।

ଭିଖାରି ହସିଲା ଓ କହିଲା, "ପୁଅ, ମୁଁ ସିନା ଅନ୍ଧ, କିନ୍ତୁ ଏ ଗାଁର ପ୍ରତ୍ୟେକ ଲୋକର କଣ୍ଠସ୍ୱର ସହ ମୁଁ ପରିଚିତ। ତମ କଣ୍ଠସ୍ୱର ନୂଆ। ତମେ କେଉଁଠାରୁ ଆସିଛ? ତମ ନାମ କ'ଣ? ଏଠାରେ କ'ଣ କରୁଛ?"

"ମୁଁ ବହୁତ ଦୂର ଗାଁରୁ ଆସିଛି। ମୋ ନାମ ସାରଥୀ। ଏହା ଗୋଟାଏ ବଡ଼ ଗାଁ ବୋଲି ଏଠି କୌଣସି କାମ ମିଳିବ, ସେହି ଆଶାରେ ଆସିଥିଲି। କିନ୍ତୁ ସକାଳଠୁଁ ବୁଲୁଛି। ବର୍ତ୍ତମାନ ସୂର୍ଯ୍ୟ ଆସି ବୁଡ଼ିବାକୁ ବସିଲେଣି। କିନ୍ତୁ କାମ ମିଳୁ ନାହିଁ।" ସାରଥୀ କହିଲା।

"ତମର କ'ଣ ବାପା ମା ନାହାନ୍ତି?" ଅନ୍ଧ ପଚାରିଲା।

"ନା। ମୁଁ ଜନ୍ମ ହେବାର ବର୍ଷକ ଭିତରେ ଦୁହେଁ ଇହଧାମରୁ ବିଦାୟ ନେଇଥିଲେ। ମୋତେ ମୋ ଜେଜେ ମା ପାଳୁଥିଲା। ସେ ବି ଚାଲିଗଲା!" ଦୀର୍ଘନିଃଶ୍ୱାସ ଛାଡ଼ି ସାରଥୀ କହିଲା।



"ଖିଆପିଆ କରିଛ ?" ଅନ୍ଧ ପଚାରିଲା ।

ଏ ପ୍ରଶ୍ନରେ ସାରଥୀ ପ୍ରଥମେ କିଛି କହିଲା ନାହିଁ । କିନ୍ତୁ ଅନ୍ଧ ପୁଣି ଏକା କଥା ପଚାରିବାରୁ ସେ ପୂର୍ବଦିନରୁ କିଛି ଖାଇନାହିଁ ବୋଲି ସ୍ୱୀକାର କଲା । ଅନ୍ଧ ତା' ପୁଟୁଳିରେ ଦୁଇଖଣ୍ଡି ରୋଟି ଓ ଗୋଟିଏ କଦଳୀ ରଖିଥିଲା । ସାରଥୀକୁ ସେ ତାହା ଖାଇବାକୁ ଦେଲା । ସାରଥୀକୁ ତାହା ଅମୃତ ଭଳି ସୁଆଦୁ ଲାଗିଲା । ବୁଢ଼ାର ସ୍ନେହ ଓ ଉଦାରତା ଦେଖି ତା' ଆଖିକୁ ଜଳ ଆସିଗଲା ।

ଅନ୍ଧକୁ ସେ ବାଟ କଢ଼ାଇ ଶିବ ମନ୍ଦିର ପାଏ ନେଇଗଲା । ମନ୍ଦିର ଆଗରେ ଦୁହେଁ ବସି ରହିଲେ । ମନ୍ଦିରକୁ ଆସୁଥିବା ଲୋକଙ୍କ ଭିତରୁ କେହି କେହି ଅନ୍ଧ ତା' ଆଗରେ ବିଛାଇ ରଖିଥିବା ଲୁଗା ଉପରେ ପ୍ରସାଦରୁ କିଛି ବା ପଇସାପତ୍ର ପକାଇ ଦେଉଥାନ୍ତି ।

ରାତିରେ ବରଗଛ ତଳେ ଅନ୍ଧ ସହିତ ସାରଥୀ ବି ଶୋଇଗଲା । ସକାଳେ ସେ ଅନ୍ଧକୁ ଧରି ମନ୍ଦିର ପାଖକୁ ନେଇଗଲା । ଦିନଯାକ ଯେତିକି ପଇସା ମିଳିଲା, ସେଥିରେ ସେ ବଜାରରୁ କିଛି ଖାଦ୍ୟ କିଣି ଆଣିଲା । ଦୁହେଁ ମିଶି ଖିଆପିଆ କରି ପୁଣି ବରଗଛ ତଳେ ରାତି କଟାଇଲେ । ତେଣିକି ସବୁଦିନେ ସେମିତି ତାଙ୍କର ଚାଲିଲା । ଅନ୍ଧ ଭିଖାରି ସାରଥୀକୁ ନିଜ ପୁଅ ଭଳି ସ୍ନେହ କରିବାକୁ ଲାଗିଲା ।

ଦିନେ ଦୁଇପହର ବେଳେ ମନ୍ଦିର କାନ୍ଥକୁ ଆଉଜି ପଡ଼ି ଅନ୍ଧ ବୁଢ଼ା ଶୋଇ ପଡ଼ିଥାଏ । ସାରଥୀ ପାଖରେ ବସିଥିଲା । ତା' ଆଖି ମଧ୍ୟ ବୁଜି ହୋଇ ଆସିଥାଏ । ହଠାତ୍ ଏକ ମୃଦୁ ଶବ୍ଦରେ ସେ ଆଖି ଖୋଲି ଦେଖିଲା, ଅନ୍ଧ ବୁଢ଼ାର ଲୁଗା ଉପରେ- ଛୋଟିଆ ଥଳିଟିଏ ପଡ଼ିଛି । ମୂଲ୍ୟବାନ ପୋଷାକ ପିନ୍ଧିଥିବା ଜଣେ ବୟସ୍କ ବ୍ୟକ୍ତି ଚାଲି ଯାଉଛନ୍ତି ।

"ଶୋଇ ପଡ଼ିଛ କି ? ଜଣେ ଭଦ୍ରଲୋକ ଗୋଟାଏ ଥଳି ପକାଇଦେଇ ଗଲେ ।" ସାରଥୀ ଅନ୍ଧକୁ କହିଲା । କିନ୍ତୁ ଅନ୍ଧକୁ ଗାଢ଼ ନିଦ ଘାରି ଆସିଥିଲା । ସେ ଉତ୍ତର ଦେଲା ନାହିଁ । ସାରଥୀ ଥଳିଟି ଉଠାଇ ନେଇ



ଭଦ୍ରଲୋକଙ୍କ ଆଡ଼େ ଅନାଇଲା । ଭଦ୍ରଲୋକ ଥରେ ପଛକୁ ଚାହିଁ ଅଳ୍ପ ହସିଦେଇ ପୁଣି ନିଜ ବାଟରେ ଚାଲିଗଲେ ।

ସାରଥୀ ସଙ୍ଗେ ସଙ୍ଗେ ଥଳିଟି ଖୋଲି ଦେଖିଲା, ଭିତରେ କେତୋଟି ସୁନା ମୋହର ଅଛି ! ସେ ଡାବା ହୋଇଗଲା । ଭଦ୍ରଲୋକ ଭୁଲ୍‌ରେ କେଇ ପଇସା ବଦଳରେ ପକେଟରୁ ଏ ଥଳି କାଢ଼ି ଭିଖାରୀକୁ ଦେଇଗଲେ କି ? ସେ ଉଠି ପଡ଼ି ଭଦ୍ରଲୋକଙ୍କ ପାଖକୁ ଦୌଡ଼ିଗଲା ଓ ଥଳିଟି ଦେଖାଇ ପଚାରିଲା, "ଆପଣ କ'ଣ ଜାଣି ଜାଣି ଏହା ଦେଇଗଲେ ?"

"ହଁ ବାପା, ଅଜାଣତରେ କ'ଣ ଦିଅନ୍ତି ? ମୋର ଯେତେବେଳେ ବେପାରରେ କିଛି ବିଶେଷ ଲାଭ ହୁଏ, ସେତେବେଳେ କୌଣସି ଗରିବ ଲୋକର ଦୁଃଖ ଦୂର କରିବା ପାଇଁ ମୁଁ କିଛି ବିଶେଷ ଦାନ ଦେଇଥାଏଁ ।"

ସାରଥୀ ଡାବା ହୋଇ ଭଦ୍ରଲୋକ ଆଡ଼େ ଚାହିଁ ରହିଲା । ଭଦ୍ରଲୋକ ଅଳ୍ପ ହସି କହିଲେ, "ତମେ କିଏ ? ସେ ବୁଢ଼ାର ପୁଅ ?"

ସାରଥୀ କିଛି କହି ପାରିଲା ନାହିଁ ।

"ତମେ ଯିଏ ହୁଅ, ତମେ ବି ଅଭାବରେ ପଡ଼ି ଭିକ ମାଗିବା ସକାଶେ ବସିଥିଲ । ଯଦି ଏହାଦ୍ୱାରା ତମର ଜୀବନଧାରା ବଦଳିଯାଇ ପାରିବ, ତେବେ ମୋ ଉଦ୍ଦେଶ୍ୟ ସାଧିତ ହେବ ।"

ଏହା କହି ସହାସ୍ୟ ବଦନରେ ବେପାରୀ ଚାଲିଗଲେ ।

ସାରଥୀ ସେଇଠି ଠିଆ ହୋଇ ରହିଲା । ତା' ମନରେ ତୋଫାନ୍ ଉଠିଥାଏ । ବେପାରୀ ଅବଶ୍ୟ ଏତିକ ଅଙ୍କକୁହିଁ ଦେଇଛନ୍ତି । କିନ୍ତୁ ଯେ କୌଣସି ଗରିବ ଲୋକର ଦୁଃଖ ଦୂର କରିବା ତାଙ୍କର ଉଦ୍ଦେଶ୍ୟ । ସେ ବି ତ ଗରିବ । ଅଙ୍କ ସୁନା ମୋହର ନେଇ କରିବ କ'ଣ ? ସେ ଅନ୍ତତଃ ଏହାକୁ ଖଟାଇ ନିଜ ନିଜ ଦୁଃଖ ଦୂର କରି ପାରିବ !

ଏହିଭଳି ଚିନ୍ତା କରୁଁ କରୁଁ ସାରଥୀ କ୍ରମେ ମନ୍ଦିର ପାଖରୁ ଦୂରକୁ ଦୂରକୁ ଚାଲିଗଲା । ବଡ଼ ରାସ୍ତାକୁ ଯାଇ ଦେଖିଲା, ଗୋଟାଏ ଘୋଡ଼ା ଗାଡ଼ି ସହରକୁ ଯାଉଛି । ସେ ଗାଡ଼ିବାଲାକୁ

ଅନୁରୋଧ କରି ସେହି ଗାଡ଼ିରେ ସହର ଅଭିମୁଖେ ଚାଲିଲା ।

ବାଟରେ ଅନ୍ନ ପାଇଁ ମନ ବିକଳ ହେଲା । କିନ୍ତୁ ଗାଡ଼ି ଖୁବ୍ ତୀବ୍ର ଗତିରେ ଛୁଟି ଚାଲିଥାଏ । ସେ ଗାଡ଼ିବାଲାକୁ ତାହା ଅଟକାଇବାକୁ କହି ପାରିଲା ନାହିଁ ।

ସେ ଯାଇ ସହରରେ ପହଞ୍ଚି ଏପରି ଜଣେ ମହତ୍ ଲୋକଙ୍କ ଆଶ୍ରା ପାଇଲା, ଯିଏ ତାକୁ ସବୁ ପ୍ରକାରେ ସାହାଯ୍ୟ କଲେ ଓ ସୁନା-ମୋହର ତକ ନିଜ ଜିମ୍ମାରେ ରଖିଲେ । ସାରଥୀ ତାଙ୍କ ସହ ପରାମର୍ଶ କରି ନିଜ କର୍ମପନ୍ଥା ସ୍ଥିର କଲା ।

ଯଥାଶୀଘ୍ର ସେ ଗୋଟାଏ ବେପାର ଆରମ୍ଭ କଲା । ଦୁଇବର୍ଷ ଭିତରେ ସେ ଖାଲି ଯେ ଧନୀ ହୋଇଗଲା, ତାହା ନୁହେଁ, ସହରରେ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ରୂପେ ମଧ୍ୟ ସମ୍ମାନ ପାଇଲା ।

ସହରର ଜଣେ ବିଶିଷ୍ଟ ବ୍ୟବସାୟୀଙ୍କ ଝିଅକୁ ସେ ବିଭା ହେଲା ଓ ସୁଖରେ ରହିଲା ।

ଦିନେ ସେ ଘରେ ନଥିବା ବେଳେ ତା' ନିଜ ଗାଁର ଜଣେ ପରିବା ବିକ୍ରେତା ଆସି ତା' କୋଠାରେ ପରିବା ବିକିବା ଅବସରରେ ସାରଥୀ ପିଲାବେଳେ କେଡ଼େ ଦୁଃଖରେ ଥିଲା, ସେକଥା ତା' ସ୍ତ୍ରୀ ଆଗରେ ଗପିଲା ।

ସାରଥୀର ସ୍ତ୍ରୀ ଭାବିଲା, "ସତେ ତ! ମୋ ସ୍ୱାମୀଙ୍କର ନିଜର ବୋଲି ତ କେହି ନାହିଁ । ସେ କାହା ସାହାଯ୍ୟରେ ଏତେ ପଇସାପତ୍ର କମାଇଲେ, ସେକଥା ତ ମୁଁ ତାଙ୍କୁ କେବେ ବି ପଚାରି ନାହିଁ !"





ସେଦିନ ସାରଥୀ ଆସିବା ମାତ୍ରେ ସେ ପଚାରିଲା, "ତମେ କେଇବର୍ଷ ଭିତରେ ଏତେ ଉନ୍ନତି କଲ କିପରି ?"

ପ୍ରଶ୍ନଟି ଶୁଣି ସାରଥୀ ଚମକି ପଡ଼ିଲା । ଟିକିଏ ଥତମତ କରି ସେ ଉତ୍ତର ଦେଲା, "ପାପ ଧନରେ!"

"ନା, ମୋର ବିଶ୍ୱାସ ହେଉ ନାହିଁ !" ସ୍ତ୍ରୀ କହିଲା ।

ସାରଥୀ ଆଉ କଥା ଲୁଚାଇ ରଖି ପାରିଲା ନାହିଁ । ସବୁ କହିଗଲା ।

"ପାପଧନ ବୋଲି କାହିଁକି କହୁଛ ? ସେ ଭଦ୍ରଲୋକ ତ କହିଥିଲେ କି ତମେ ତାଙ୍କ ଦାନ ନେଇପାର ।"

"କହୁଥିଲେ ସତ, କିନ୍ତୁ ତଥାପି ମୋ ମନରେ ପାପ ରହିଛି ।" ସାରଥୀ କହିଲା ।

ତା' ସ୍ତ୍ରୀ କହିଲା, "ଯାହା ହେବାର ହୋଇଛି । ଅନ୍ଧ ବୁଢ଼ା ବର୍ତ୍ତମାନ ବି ସେହି ଗାଁରେ ଥିବେ । ଯାଅ, ତାଙ୍କୁ ସବୁ କଥା କହି ଏଠାକୁ ନେଇ ଆସ । ଆମେ ତାଙ୍କୁ ପରିବାରର ମୁରବି ରୂପେ ଦେଖିବୁ ।"

"ଯଦି ସେ ନ ଆସନ୍ତି ?"

"ତେବେ ଅନ୍ତତଃ ସାଥିରେ କିଛି ଟଙ୍କା ନେଇ ଯାଇଥାଅ । ତାଙ୍କୁ ଦେଇ ଆସିବ । କିମ୍ବା ଗାଁ ଲୋକଙ୍କ ଜିମା ଦେଇ ତାଙ୍କ ଚଳିବାର ବ୍ୟବସ୍ଥା କରିଦେଇ ଆସିବ ।"

ସାରଥୀ ଖୁସି ହୋଇ ଟଙ୍କା ଧରି ବାହାରିଗଲା ଓ ପରଦିନ ସେ ଗାଁରେ ପହଞ୍ଚି ବରଗଛ ପାଖକୁ ଗଲା । ସେଠାରେ ଜଣେ ଗ୍ରାମବାସୀ ତାକୁ କହିଲେ, "ଅନ୍ଧ ଆଜିକାଲି ମନ୍ଦିର ଭିତରେ ରହୁଛି । ଗାଁ ଲୋକେ ତାକୁ ଅନୁମତି ଦେଇଛନ୍ତି ।"

ସାରଥୀ ଯାଇ ଯେତେବେଳେ ମନ୍ଦିର ପାଖରେ ପହଞ୍ଚିଲା । ସେତେବେଳେ ସେଠାରେ କେହି ନଥିଲେ । ସେ ମନ୍ଦିର ଭିତରେ ପଶି ଅନ୍ଧାରୁଆ ପରିବେଶରେ ଏଣେତେଣେ ଅନାଇ ଅନ୍ଧକୁ ଠାବ କରିବାକୁ ଚେଷ୍ଟା କରୁଛି, ସେଠାରେ ଲୁଚି ରହିଥିବା ଜଣେ ଦସ୍ୟୁ ହଠାତ୍ ତା' ବେକରୁ ସୁନା ହାରଟି ଛଡ଼ାଇନେଲା ଓ ପକେଟରୁ ଟଙ୍କା ଥଳି ବାହାର କରିନେଲା ।



ସେ ବାଧା ଦେବାକୁ ଚେଷ୍ଟା କରିବା ମାତ୍ରେ ଦସ୍ୟୁ ଲାଠିରେ ତା' ଉପରେ ପାହାରେ କଷିଦେଲା। ସେ ଚିତ୍କାର କରି ତଳେ ପଡ଼ିଗଲା।

"କିଏ ?" ବୋଲି ପ୍ରଶ୍ନ କଲା ଅନ୍ଧ। ସେ ସାରଥୀର କଣ୍ଠସ୍ୱର ସତେ ଅବା ବାରି ପାରିଥିଲା।

"ମୁଁ ସାରଥୀ !" ଏହା କହି ନିଜ ଯନ୍ତ୍ରଣା ଭୁଲିଯାଇ ସାରଥୀ ଅନ୍ଧକୁ କୁଣ୍ଢାଇ ପକାଇଲା। ତା'ପରେ ସେ ଅଶ୍ରୁ ସମ୍ବରଣ କରି ସବୁ କଥା କହିଲା। ଶେଷକୁ କହିଲା, "ତମରି ଟଙ୍କାରେ ମୁଁ ବଡ଼ ଲୋକ ହୋଇଛି। ବର୍ତ୍ତମାନ ମୋତେ କିଛି ପରିମାଣରେ ଋଣ ପରିଶୋଧ କରିବାର ସୁଯୋଗ ଦିଅ। ତୁମକୁ ମୋ ସ୍ତ୍ରୀ ବାପା ଭଳି ଜ୍ଞାନ କରି ତୁମର ସେବା କରିବ। ମୋ ସହ ଚାଲ।"

"ନା ପୁଅ। ତାହା ସମ୍ଭବ ନୁହେଁ।" ଅନ୍ଧ କହିଲା।

"କାହିଁକି ? ତୁମେ କ'ଣ ମୋତେ ଘୃଣା କର ?" ସାରଥୀ ଅଭିମାନଭରା କଣ୍ଠସ୍ୱରରେ ପଚାରିଲା।

ଅନ୍ଧ ସ୍ମିତହାସ୍ୟ ଖେଳାଇ କହିଲା, "ଘୃଣା କରିବା ତ ଦୂରର କଥା, ତୋତେ ପୁଅ ଭଳି ସ୍ନେହ କରେଁ। ତେଣୁ ଯିବି ନାହିଁ। ତୁ ଯା। ତୋ ପାଖରେ ତ ବର୍ତ୍ତମାନ ବାଟଖର୍ଚ୍ଚ ବି ନାହିଁ। ନେ। ଏ ପଇସାତକ ନେଇଯା।"

ଏହା କହି ଅନ୍ଧ ଗୋଟାଏ ପଇସା ପୁଟୁଳି ତାକୁ ଧରାଇ ଦେଲା ଓ ସ୍ୱଗତୋକ୍ତି କଲାଭଳି କହିଲା, "ଭାଗ୍ୟ !"

ସାରଥୀ ଯେତେ ବୁଝାଇଲେ ବି ଫଳ ହେଲା ନାହିଁ।

ସାରଥୀ ସହରକୁ ଫେରିଗଲା। ଦୁଇଦିନ ପରେ ପୁଣି ସେ ଟଙ୍କା ଧରି ଆସିଲା। ପ୍ରଥମ ଥର ଟଙ୍କା ଦସ୍ୟୁ ନେଇ ଯାଇଥିଲା। ଏଥର ପୁଣି ଟଙ୍କାତକ ସେ ମନ୍ଦିରର ପରିଚାଳକମାନଙ୍କୁ ଦେଇ ଅନ୍ଧ ସକାଶେ ଗୋଟାଏ ସ୍ଥାୟୀ ବ୍ୟବସ୍ଥା କରିଦେବା ପାଇଁ ଆସିଥିଲା।

କିନ୍ତୁ ଦେଖିବା ବେଳକୁ ଅନ୍ଧ ବୁଢ଼ା ସେ ଗାଁ ଛାଡ଼ି କୁଆଡ଼େ ଚାଲି ଯାଇଛି। କୁଆଡ଼େ

ଗଲ କେହି ଜାଣି ନଥିଲେ । ସାରଥୀ ଦୀର୍ଘ-ନିଃଶ୍ୱାସ ଛାଡ଼ି ଫେରିଗଲ ।

ବେତାଳ ଟିକିଏ ଚୁପ୍ ରହି ଗୀର୍ କଣ୍ଠରେ ପଚାରିଲ, "ରାଜା ! ମୋର କିଛି ସନ୍ଦେହ ରହିଛି । ଅନ୍ଧ ବୁଢ଼ା କାହିଁକି ସାରଥୀ ସହ ଗଲ ନାହିଁ ? ସେ କାହିଁକି କହିଲ ଯେ ସାରଥୀକୁ ସେ ପୁଅ ଭଳି ସ୍ନେହ କରେ ବୋଲି ତା' ସହ ଯିବାକୁ ନାରାଜ ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଅନ୍ଧ 'ଭାଗ୍ୟ' ବୋଲି ଯେଉଁ ସ୍ୱଗତୋକ୍ତି କଲ, ତାହାର ଭିତରେ ଲୁଚି ରହିଛି ତା' ପ୍ରକୃତ ମନୋଭାବ । ସେ ବୁଝିପାରିଲ ଯେ ଧନଭୋଗ କରିବା ତା' ଭାଗ୍ୟରେ ନାହିଁ । ଯଦି ଥାନ୍ତା, ତେବେ ସାରଥୀ ପ୍ରଥମରୁ ଧନତକ ପାଇ ତାକୁ ତ୍ୟାଗ କରି ଚାଲିଯାଇ ନଥାନ୍ତା । ଦ୍ୱିତୀୟରେ, ତା' ଭାଗ୍ୟ ଏପରି ଯେ ତା' ସମ୍ପର୍କରେ ଆସିବା ମାତ୍ରେ ସାରଥୀ ମଧ୍ୟ ଭିଖାରୀ ହୋଇ ଯାଉଛି । ତାକୁ ଧନ ଦେବାକୁ ଆସି ସାରଥୀ ଖାଲି ଯେ ଧନତକ ହରାଇଲ, ସେତିକି ନୁହେଁ, ନିଜ ସୁନାହାରଟି ମଧ୍ୟ ହରାଇଲ । ସାରଥୀକୁ ଯେହେତୁ ସେ ନିଜ ପୁଅଭଳି ସ୍ନେହ କରୁଥିଲ, ସେ ତା' ନିଜ ଦୁର୍ଭାଗ୍ୟରେ ସାରଥୀକୁ ସାଥୀ କରିବାକୁ ଚାହୁଁ ନଥିଲ । ଅନ୍ଧର ଏ ଧାରଣା କୁସଂସ୍କାର ହୋଇପାରେ, କିନ୍ତୁ ଏହି ଧାରଣାର ବଶବର୍ତ୍ତୀ ହୋଇ ପୁଣି ଥରେ ସାରଥୀ ସେଠି ଆସି ପହଞ୍ଚିବା ପୂର୍ବରୁ ସେ ସ୍ଥାନ ତ୍ୟାଗ କରି ନିରୁଦ୍ଦିଷ୍ଟ ହୋଇଗଲ ।"

ରାଜାଙ୍କ ଉତ୍ତର ପ୍ରଦାନ ଶେଷ ହେବା ମାତ୍ରେ ଶବସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲ ।

(କଳ୍ପିତ)





# ଭୀରୁର ଭୂମିକା

ରାମପୁର ଗୋଟିଏ ଛୋଟିଆ ରାଜ୍ୟ । ସେ ରାଜ୍ୟର ଗୋଟିଏ ଗ୍ରାମରେ ପ୍ରସାଦ ନାମକ ବାଳକ ଥାଏ । ପିଲାବେଳରୁ ପ୍ରସାଦର ବାପା ମା ମରି ଯାଇଥାନ୍ତି । ତାକୁ ତା' ବୁଢ଼ୀମା ପାଳି ପୋଷି ମଣିଷ କରିଥାନ୍ତି ।

ପ୍ରସାଦ ଦେଖିବାକୁ ଡଉଲ୍ ଡାଉଲ୍ ବାଳକ, କିନ୍ତୁ ତା' ଭଳି ଡରୁଆ ଜୀବଜଗତରେ ଆଉ କେହି ନଥିବେ ।

ଦିନେ ଜଣେ ସନ୍ନ୍ୟାସୀ ସେମାନଙ୍କ ଘରେ ଅତିଥି ହୋଇଥାନ୍ତି । ସେ ଖାଇବାକୁ ବସିଛନ୍ତି, ବୁଢ଼ୀମା ତାଙ୍କୁ ପରଶୁଛନ୍ତି, ସେତିକିବେଳେ ଗୋଟାଏ ମୂଷା ଘର କୋଣରୁ ବାହାରି ବାରନ୍ଦା ଉପର ଦେଇ ଦୌଡ଼ି ଗଲା । ବାରନ୍ଦାର ଗୋଟାଏ ପ୍ରାନ୍ତରେ ବସିଥିଲା ପ୍ରସାଦ । ସେ କୋଳରେ ତା' ପୋଷା ବିଲେଇକୁ ଧରିଥିଲା । ଯେମିତି ବିଲେଇ ମୂଷାକୁ ଦେଖିଛି, ସେମିତି କୋଳରୁ ଡେଇଁ ପଡ଼ି କୁଆଡ଼େ ଲୁଚିବ ବାଟ ପାଇଲା ନାହିଁ ।

ବୁଢ଼ୀମା ପ୍ରସାଦକୁ କହିଲେ, "ପୁଅ, ମୂଷା ଦାଉରୁ ଘରକୁ ରକ୍ଷା କରିବା ନିମନ୍ତେ ଲୋକେ ବିଲେଇ ପାଳନ୍ତି । କିନ୍ତୁ ତୋ ବିଲେଇ ତୋ ଗୁଣ ଏମିତି ଶିଖିନେଇଛି ଯେ ମୂଷା ଦେଖିଲେ ପଳେଇ ଯାଉଛି !"

ସନ୍ନ୍ୟାସୀ ଏକଥା ଶୁଣି ଆହୁରି ଆଶ୍ଚର୍ଯ୍ୟ ହେଲେ । ବୁଢ଼ୀମା ସେଉଠୁ ସନ୍ନ୍ୟାସୀଙ୍କୁ ପ୍ରସାଦର ଭୀରୁତା କଥା ସବୁ ଜଣେଇଲେ । ସନ୍ନ୍ୟାସୀ ଖାଇ ସାରି ପ୍ରସାଦର ହାତ ଦେଖିଲେ । ଧ୍ୟାନ ଦେଇ ଅନେକ ସମୟ ଦେଖି ବୁଢ଼ୀମାଙ୍କୁ କହିଲେ, "ଏ ପିଲାର ହସ୍ତରେଖା ବଡ଼ ବିଚିତ୍ର । ଏହାର ଏଭଳି ସ୍ୱଭାବ ଯୋଗୁଁ ଭବିଷ୍ୟତରେ ଗୋଟାଏ ବିଶେଷ କାର୍ଯ୍ୟ ସାଧନ ହେବାର ଅଛି ।"

ଗଙ୍ଗାପ୍ରସାଦ



ଏହାର କିଛିଦିନ ପରେ ଦିନେ ପ୍ରସାଦ ଜମିଦାରଙ୍କ ଘର ପାଖଦେଇ ଯାଉଛି, ଜମିଦାରଙ୍କ କୁକୁର ଉପରେ ତା' ଆଖି ପଡ଼ିଲା । କୁକୁରଟି ଖୁବ ସୌଖିନ ଦିଶୁଥାଏ । ପ୍ରସାଦ ତାକୁ ଆଉଁସି ଦେଲା । ଜମିଦାର ସେକଥା ଲକ୍ଷ୍ୟ କଲେ । ଏହାର କିଛି ସମୟ ପରେ ତାଙ୍କର ଜଣେ ଗୃକର ଖଣ୍ଡିଏ ଲଠି ଧରି ସେଠାରେ ପହଞ୍ଚିଯିବା ମାତ୍ରେ କୁକୁରଟି ଭୟରେ ଆର୍ତ୍ତନାଦ କରି ପଳାଇଗଲା ।

ଜମିଦାର ଆଶ୍ଚର୍ଯ୍ୟ ହେଲେ । ପ୍ରସାଦର ଭୀରୁତା କଥା ସେ ଶୁଣିଥିଲେ । ତାଙ୍କର ଧାରଣା ହେଲା, ପ୍ରସାଦ କୁକୁରକୁ ଖେଳ କରିବା ଫଳରେ କୁକୁର ସେଭଳି ଭୀରୁ ପାଲଟିଗଲା ।

ସେ ସ୍ଥାନୀୟ ବିଗୃରକଙ୍କ ଆଗରେ ଏ ବିଷୟରେ ଅଭିଯୋଗ କଲେ । ବିଗୃରକ ପ୍ରସାଦକୁ କହିଲେ, "ତୁ ଜମିଦାରଙ୍କ କୁକୁରକୁ କି ମନ୍ତ୍ର କଲୁ ଯେ ସେ ହଠାତ୍ ଡରୁଆ ପାଲଟିଗଲା ?"

"ହଜୁର! ମୁଁ ମନ୍ତ୍ରତନ୍ତ୍ର କିଛି ଜାଣେନା । କୁକୁର କାହିଁକି ଡରୁଆ ହେଲା, ସେକଥା ବି ମୁଁ କିଛି କହିପାରିବି ନାହିଁ ।" ପ୍ରସାଦ କୈଫିୟତ୍ ଦେଲା ।

"ତୁ ତାକୁ ଆଘାତ କରି ନାହୁଁ ?"

"ନାଁ ହଜୁର୍, ମୁଁ ତାକୁ ଧିରେ ଧିରେ ଆଉଁଷି ଦେଇଥିଲି ମାତ୍ର–ଏତିକି ଜୋରରେ···" ପ୍ରସାଦ ବିଗୃରକଙ୍କ ହାତ ଆଉଁସି ଦେଲା ।

ବିଗୃରକଙ୍କ ଭିତରେ ହଠାତ୍ ଗୋଟିଏ ପରିବର୍ତ୍ତନ ଦେଖାଗଲା । ସେ ଏଣେତେଣେ ଅନାଇଲେ । ତାଙ୍କ ଦୃଷ୍ଟିରେ ଡରୁଆ ଭାବ ଫୁଟି ଉଠୁଥାଏ । ସେ କହିଲେ, "ଆଜି ବିଗୃର ଏତିକିରେ ଥାଉ ।"

ଜମିଦାରଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ପରଦିନ ଜମିଦାରଙ୍କ ସହିତ ରାଜ୍ୟର ମନ୍ତ୍ରୀଙ୍କର ଦେଖା ହେବାର ଥାଏ । ସାକ୍ଷାତ୍ ଭିତରେ ଜମିଦାର ମନ୍ତ୍ରୀଙ୍କୁ ପ୍ରସାଦ ବିଷୟରେ ତାଙ୍କର ଅଦ୍ଭୁତ ଅଭିଜ୍ଞତା କଥା କହିଲେ । ରାଜପ୍ରାସାଦକୁ ଯିବା ନିମନ୍ତେ ପ୍ରସାଦ ପାଖକୁ ଡାକରା ଆସିଲା ।

ପ୍ରସାଦ ଉତ୍ସୁକରେ ସାରା ରାତି ଶୋଇ ପାରିଲା ନାହିଁ । ତା' ଅବସ୍ଥା ଯୋଗୁଁ ବୁଢ଼ୀମାଙ୍କର ବି ଭୀଷଣ ଦୁଃଖ । ପରଦିନ ବିଚାରି ବୁଢ଼ୀମା ପ୍ରସାଦ ସହିତ ରାଜଧାନୀକୁ ଗଲେ ।

ବୁଢ଼ୀମା ବାହାରେ ଅପେକ୍ଷା କଲେ । ପ୍ରସାଦ ମନ୍ତ୍ରୀଙ୍କ ସହ ସାକ୍ଷାତ୍ କରିବା ନିମନ୍ତେ ତାଙ୍କ କୋଠି ଭିତରେ ପ୍ରବେଶ କଲା । ସେତେବେଳେ ମନ୍ତ୍ରୀ ଜଣେ ବିଶିଷ୍ଟ ମଲ୍ଲଯୋଦ୍ଧାଙ୍କ ସହ କଥାଭାଷା ହେଉଥିଲେ । ରାଜାଙ୍କ ଦେହରକ୍ଷୀମାନଙ୍କୁ ମଲ୍ଲଯୋଦ୍ଧା କେତୋଟି କୌଶଳ ଶିଖାଇବା ବିଷୟ ଆଲୋଚନା ହେଉଥିଲା । ଦେହରକ୍ଷୀ ଦୁଇଜଣ ବି ସେଠି ଥିଲେ ।

ପ୍ରସାଦ ଆସିବା ମାତ୍ରେ ମନ୍ତ୍ରୀ ତା'କୁ ମଲ୍ଲଯୋଦ୍ଧାଙ୍କ ସହ ପରିଚୟ କରାଇଦେଲେ । ପ୍ରସାଦ ସେଭଳି ଜଣେ ବୀରଙ୍କୁ ଦେଖି ମନେ ମନେ ନିଜ ଭୀରୁତା କଥା ଚିନ୍ତା କରି ଭୀଷଣ ଗ୍ଲାନି ଅନୁଭବ କଲା । ସେ ଆବେଗରେ ମଲ୍ଲବୀରଙ୍କୁ ପ୍ରଣାମ କଲା । ମଲ୍ଲବୀର ତା' ମୁଣ୍ଡରେ ହାତ ଦେଲେ, ପିଠି ଥାପୁଡ଼ାଇ ଦେଲେ ।

କିନ୍ତୁ ପରେ ପରେ ମଲ୍ଲଯୋଦ୍ଧାଙ୍କ ମୁହଁ ଶୁଖିଗଲା । ସେ ମନ୍ତ୍ରୀଙ୍କୁ କହିଲେ, "ଆଜ୍ଞା, ଆଜି ମୁଁ ଏ ଦୁହିଁଙ୍କୁ କୌଣସି କୌଶଳ ଶିଖାଇପାରିବି ନାହିଁ । ପରେ ଆସିବି ।"

"କାହିଁକି ? ହେଲା କ'ଣ ?" ମନ୍ତ୍ରୀ ପଚାରିଲେ ।

"ମୋତେ କାହିଁକି ଛାନିଆ ଲାଗୁଛି ।" ଏହା କହି ମଲ୍ଲବୀର ଚାଲିଯିବାକୁ ତତ୍ପର ହେଲେ । ମନ୍ତ୍ରୀ ତ ପ୍ରସାଦର ଗୁଣ ଜାଣିଥିଲେ, ତେଣୁ





ରାଜାଙ୍କର ଏ ହୁକୁମ ଯେମିତ ବୁଢ଼ୀମା କାନରେ ପଡ଼ୁଛୁ, ସେ ଦୌଡ଼ ଆସି ମନ୍ତ୍ରୀଙ୍କ ଆଗରେ କାନ୍ଦିଲେ ଓ ସନ୍ନ୍ୟାସୀ ଯାହା କହିଥିଲେ ସେକଥା କହି ନାତିକୁ ରକ୍ଷା କରିବା ନିମନ୍ତେ ଆବେଦନ କଲେ । ମନ୍ତ୍ରୀ କହିଲେ, "ତମେ ଚିନ୍ତା କର ନାହିଁ । ତମ ନାତିର କୌଣସି ଅନିଷ୍ଟ ହେବ ନାହିଁ ।"

ଏହାପରେ ସେ ରାଜାଙ୍କୁ କହିଲେ, "ମହାରାଜ, ପ୍ରସାଦକୁ ସଙ୍ଗେ ସଙ୍ଗେ ନ ମାରି କିଛିକାଳ ବନ୍ଦୀ କରି ରଖାଯାଉ । ତାକୁ କେହି ନ ଛୁଇଁଲେ ହେଲା । ବିଧାତା କାହିଁକି ତାକୁ ଏଭଳି ଭାବରେ ସର୍ଜନା କରିଛି, ସେକଥା ଲକ୍ଷ୍ୟ କରିବା କଥା ।"

ସେ ଦୁଇ ଦେହରକ୍ଷୀଙ୍କୁ ଇଙ୍ଗିତ ଦେଇ ମଲ୍ଲବୀରଙ୍କୁ ଅଟକାଇବାକୁ କହିଲେ । ସେ ଦୁହେଁ ମଲ୍ଲବୀରଙ୍କୁ ଧରି ରଖିବାକୁ ଚେଷ୍ଟା କଲେ, କିନ୍ତୁ ମଲ୍ଲବୀର ଛଟିପିଟି ହୋଇ ପଳେଇଗଲେ ।

ମନ୍ତ୍ରୀ ଯାଇ ରାଜାଙ୍କୁ ସବୁକଥା ଜଣାଇଲେ । ରାଜା କହିଲେ, "ଏ ପିଲା ଉପରେ ନିଶ୍ଚୟ କୌଣସି ଦାରୁଣ ଅଭିଶାପ ରହିଛି । ସେ ଯେତେବେଳେ ସ୍ପର୍ଶମାତ୍ରେ ମଣିଷ ଓ ପଶୁଙ୍କୁ ଭୀରୁ ବନାଇ ଦେଉଛି, କାଳକ୍ରମେ ସେ ଆମର ସମସ୍ତ ରାଜ୍ୟବାସୀଙ୍କୁ ଭୀରୁ ବନାଇ ଦେବା ଅସମ୍ଭବ ନୁହେଁ । ତେଣୁ ବିଳମ୍ବ ନକରି ସଙ୍ଗେ ସଙ୍ଗେ ତାକୁ ଫାସିରେ ଝୁଲାଇ ଦିଅ ।"

ରାଜା ଏ ପ୍ରସ୍ତାବରେ ସମ୍ମତ ହେଲେ । ପ୍ରସାଦ ଓ ତା' ବୁଢ଼ୀମାଙ୍କୁ ଗୋଟାଏ ବଙ୍ଗଳାରେ ରଖାଗଲା । ସେମାନଙ୍କ ଖିଆପିଆ ସକାଶେ ଉପଯୁକ୍ତ ବ୍ୟବସ୍ଥା କରି ଦିଆଗଲା ।

ଏକ ସପ୍ତାହ ପରେ ରାମପୁର ରାଜ୍ୟରେ ପହଞ୍ଚିଲା ଦାରୁଣ ଦୁଃସମ୍ବାଦ । ପଡ଼ୋଶୀ ଚଣ୍ଡଗଡ଼ ରାଜ୍ୟର ପ୍ରତାପଶାଳୀ ରାଜା ତାଙ୍କର ବିରାଟ ସୈନ୍ୟବାହିନୀ ଧରି ରାମପୁର ସୀମାନ୍ତରେ ଛାଉଣୀ ପକାଇଥାନ୍ତି । ସେ ଖବର ଦେଲେ, ରାମପୁର ତାଙ୍କ ଅଧୀନତା ସ୍ୱୀକାର କରୁ, ନହେଲେ ସେ ରାମପୁର ଆକ୍ରମଣ କରିବେ ।

ରାଜା କ'ଣ କରିବେ ଠଉରାଇ ପାରିଲେ ନାହିଁ ।

ମନ୍ତ୍ରୀ କହିଲେ, "ଚିନ୍ତା କରନ୍ତୁ ନାହିଁ । ମୁଁ ସବୁ ବ୍ୟବସ୍ଥା କରିବି ।"

ସେ ଚନ୍ଦ୍ରଗଡ଼ ରାଜାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ । ଚିଠି ଖଣ୍ଡିକ ପ୍ରସାଦକୁ ଦେଇ ଶତ୍ରୁ ରାଜା ପାଖକୁ ପଠାଇଲେ । ସାଥିରେ ଦୁଇଜଣ ସୈନିକ ଗଲେ ।

ପ୍ରସାଦ ପ୍ରାଣ ଭୟରେ ଥରି ଥରି ଚନ୍ଦ୍ରଗଡ଼ ରାଜାଙ୍କ ଶିବିରରେ ପହଞ୍ଚିଲା । ଶତ୍ରୁ ରାଜା ଧରିନେଲେ ଯେ ସନ୍ଧି ପ୍ରସ୍ତାବ ଧରି ଦୂତ ଆସିଛି । କିନ୍ତୁ ଚିଠି ପଢ଼ି ତାଙ୍କ କ୍ରୋଧର ସୀମା ରହିଲା ନାହିଁ । ଚିଠିରେ ତାଙ୍କୁ ଗାଳି-ଗୁଲଜ କରାଯାଇଥିଲା ।

"ଏ ଦୂତର ଶିରଚ୍ଛେଦ କର!" ସେ ଆଦେଶ ଦେଲେ ।

ପ୍ରସାଦ ସଙ୍ଗେ ସଙ୍ଗେ ରାଜାଙ୍କ ପାଦ ଧରି ପକାଇ କହିଲା, "ମହାରାଜ! ମୁଁ ପତ୍ରବାହକ ମାତ୍ର । ପତ୍ରରେ କ'ଣ ଲେଖାଥିଲା, ସେ କଥା ମୁଁ କିଛି ଜାଣେ ନା !"

ଯେମିତି ପ୍ରସାଦ ତାଙ୍କ ଗୋଡ଼ ଛୁଇଁଛି, ସେମିତି ରାଜାଙ୍କ ଭିତରେ ଅଦ୍ଭୁତ ଭାବାନ୍ତର ହେଲା । ସେ ଭୟରେ ଥରିବାକୁ ଲାଗିଲେ । ତାଙ୍କର ମନେ ହେଲା, ରାମପୁର ସହ ଯୁଦ୍ଧ ହେଲେ ତାଙ୍କର ମୃତ୍ୟୁ ଅନିବାର୍ଯ୍ୟ! ସଙ୍ଗେ ସଙ୍ଗେ ସେ ଘୋଷଣା କଲେ, "ଏହି ମୁହୂର୍ତ୍ତରେ ତମ୍ବୁ ଉଠାଇ ଆମେ ଫେରିଯିବା ।" ତାହାହିଁ ହେଲା ।

ଯେମିତି ଶତ୍ରୁ ରାଜା ଚାଲିଯାଇଛନ୍ତି, ସେମିତି ପ୍ରସାଦ ମନରେ ଗୋଟାଏ ବିରାଟ ପରିବର୍ତ୍ତନ ଆସିଲା । ସେ ଅନୁଭବ କଲା ଯେ ତା' ଭିତରୁ ଭୟଭାବ ପୁରାପୁରି ଚାଲିଯାଇଛି । ସେ ଯାଇ ମନ୍ତ୍ରୀଙ୍କୁ ସେକଥା କହିଲା । ମନ୍ତ୍ରୀ ପରୀକ୍ଷା କରି ଦେଖିଲେ ଯେ ସେ ସତ କହୁଛି । ଯେଉଁ ଭଲକାମ ହେବା ପାଇଁ ବିଧାତା ତା' ଭିତରେ ସେ ଅଦ୍ଭୁତ ଗୁଣ ଦେଇଥିଲେ, ସେ କାମ ହୋଇଯାଇଛି ବୋଲି ସେ ବୁଝିଲେ । ପ୍ରସାଦକୁ ଦରବାରରେ ଭଲ ପଦ ମିଳିଲା । ସେ ବୁଢ଼ୀମାକୁ ଧରି ଆନନ୍ଦରେ ରହିଲା ।





# ପିତାଙ୍କ ଆଦର୍ଶ !

ଅନେକ କାଳ ତଳର କଥା । ଥରେ ବୋଧିସତ୍ତ୍ୱ କାଶୀ ରାଜ୍ୟର ଗୋଟିଏ ପଲ୍ଲିରେ ଜନ୍ମଗ୍ରହଣ କରିଥାନ୍ତି । ବାପା ମା ତାଙ୍କ ନାମ ରଖିଥିଲେ କମଳ । ସେମାନେ ବହୁତ ସ୍ନେହ ଯତ୍ନରେ କମଳକୁ ବଢ଼ାଇଥିଲେ ।

କମଳ ଶିଶୁଅବସ୍ଥାରେହିଁ ନିଜର ଅସାଧାରଣ ବୁଦ୍ଧି ଓ ବିବେକର ପରିଚୟ ଦେଲା । ବାପା ମା ତାକୁ ଯେତିକି ସ୍ନେହ କରୁଥିଲେ, ତାହାଠାରୁ ବହୁଗୁଣ ଅଧିକ ସ୍ନେହ କରୁଥିଲେ ତା' ଜେଜେ ବାପା ।

ତେବେ ଜେଜେବାପା ସେତେବେଳକୁ ଅତ୍ୟନ୍ତ ବୃଦ୍ଧ ଓ ଅସୁସ୍ଥ ହୋଇ ପଡ଼ିଥାନ୍ତି । ବେମାରି ଯୋଗୁଁ ତାଙ୍କୁ ପ୍ରାୟ ସର୍ବଦା ଶଯ୍ୟାଶାୟୀ ରହିବାକୁ ପଡୁଥାଏ । ତାଙ୍କ ସେବା ଶୁଶ୍ରୂଷାର ଭାର କମଳର ମା ଉପରେ ପଡ଼ିଥାଏ । ଶ୍ୱଶୁରଙ୍କ ସେବା କରି କରି ସେ ହାଲିଆ ହୋଇ ପଡୁଥାନ୍ତି । ଦିନେ ସେ ତାଙ୍କ ସ୍ୱାମୀଙ୍କୁ କହିଲେ, "କେତେଦିନ ମୁଁ ଏମିତି ତମ ବାପାଙ୍କ ସେବା କରି ଚାଲିଥିବି? ମୋର ସୁଖ ବା ବିଶ୍ରାମ ବୋଲି କିଛି ନାହିଁ!"

ତାଙ୍କ ସ୍ୱାମୀ ଗମ୍ଭୀର ଭାବରେ କହିଲେ, "ଯେତେଦିନ ସେ ବଞ୍ଚିଥିବେ, ସେତେଦିନ ସେବା ଶୁଶ୍ରୂଷା କରିବାକୁହିଁ ପଡ଼ିବ । ତାଙ୍କୁ ତ ଆଉ ମାରିଦେଇ ପାରିବା ନାହିଁ?"

ସ୍ତ୍ରୀ କହିଲେ, "ସେ ଯେପରି କଷ୍ଟ ପାଉଛନ୍ତି, ସେଥିରେ ଶୀଘ୍ର ମରିଗଲେ ତାଙ୍କର ଭଲ ହୁଅନ୍ତା । ଆମେ ସିନା ତାଙ୍କୁ ମାରିଦେବା ନାହିଁ, କିନ୍ତୁ ଦିନେ ଦୁଇଦିନ ଔଷଧ ନଦେଲେ ସେ ମରିଯିବେ ।"

ପ୍ରଥମେ ପ୍ରଥମେ ସ୍ତ୍ରୀଙ୍କର ଏ ଯୁକ୍ତି କମଳର ବାପାଙ୍କୁ ଭଲ ଲାଗୁ ନଥିଲା । କିନ୍ତୁ କ୍ରମେ ଏ ଯୁକ୍ତି ତାଙ୍କ ମନକୁ ପାଇଲା । ସେ

ନିଜେ ବୁଝାଇ ଗୋଟାଏ କାର୍ଯ୍ୟପନ୍ଥା ସ୍ଥିର କଲେ ।

ତନେ ସେ ତାଙ୍କ ବୃଦ୍ଧ ପିତାଙ୍କୁ କହିଲେ, "ତୁମେ ଯେଉଁ ଔଷଧ ଖାଉଥିଲ, ଆଉ ସେ ଔଷଧ କାମ ଦେବ ନାହିଁ । ଦୂରବର୍ତ୍ତୀ ଗୋଟିଏ ଗ୍ରାମକୁ ଜଣେ ଜଣେ ବଡ଼ ବୈଦ୍ୟ ଆସିଛନ୍ତି । ସେଠାକୁ ଚାଲ । ସେ ପରୀକ୍ଷା କରି ନୂଆ ଔଷଧ ଦେବେ ।"

ବୃଦ୍ଧ ସେଥିରେ ରାଜି ହେଲେ । ତାଙ୍କୁ ଶଗଡ଼ରେ ବସାଇ କମଳର ବାପା ଶଗଡ଼ ଚଲାଇବାକୁ ଉଦ୍ୟତ ହେଲେ । ସେତିକିବେଳେ କମଳ ଆସି ଗାଡ଼ିରେ ବସି ପଡ଼ିଲା ଓ କହିଲା, "ମୁଁ ବି ଯିବି ।"



କମଳର ବାପା ଯେତେ ମନା କଲେ ବି ସେ ଶୁଣିଲା ନାହିଁ । ଅଗତ୍ୟା ପିତା ଓ ପୁତ୍ରଙ୍କୁ ଧରି ସେ ଚାଲିଲେ ।

ବଣ ଭିତରେ ଠାଏଁ ଗାଡ଼ି ଅଟକାଇ ସେ ବୃଦ୍ଧଙ୍କୁ ଓ କମଳାକୁ କହିଲେ, "ଏଇଠାରେ ଅପେକ୍ଷା କର । ମୁଁ ଆସୁଛି । ଏହା କହି ସେ କୋଦାଳ ଧରି ଗୋଟାଏ ବୁଦା ଆଢୁଆଳରେ ଗାତ ଖୋଳିବାକୁ ଲାଗିଲେ । ବୃଦ୍ଧଙ୍କୁ ଦୁଇଦିନ ଧରି ଔଷଧ ଦିଆଯାଇ ନଥିଲା । ତେଣୁ ସନ୍ଧ୍ୟା ପୂର୍ବରୁ ସେ ମରିଯିବେ ବୋଲି କମଳର ବାପା ଧରି ନେଇଥିଲେ ।

କିଛି ସମୟ ପରେ କମଳ ନିଜେ ଯାଇ ଅଦୂରରେ ଗୋଟାଏ ଗାତ ଖୋଳିବାକୁ ଲାଗିଗଲା । ତା' ବାପା ଶବ୍ଦ ଶୁଣି ଅନାଇ ତାକୁ ଗାତ ଖୋଳିବାର ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁ କ'ଣ କରୁଛୁ ?"

"ତୁମେ ଯାହା କରୁଛ, ମୁଁ ବି ସେଇଆ କରୁଛି !" କମଳ ଉତ୍ତର ଦେଲା ।

"ମୁଁ କାହିଁକି ଖୋଳୁଛି ତୁ କ'ଣ ଜାଣୁ ?"

"କାରଣ ଯାହା ହେଉ, ତୁମ ଆଦର୍ଶ ମୁଁ ଅନୁସରଣ କରିବି ।"

କମଳର ଏ ଉତ୍ତର ଶୁଣି ବାପା କଣ୍ଠସ୍ୱର ନିମ୍ନ କରି କହିଲେ, "କଥା କ'ଣ କି, ତୋ ଜେଜେବାପାଙ୍କ ଅବସ୍ଥା ଏପରି, ଯେ କୌଣସି ସମୟରେ ସେ ମରିଯିବେ । ତାଙ୍କୁ ସମାଧି ଦେବା ମୋର କର୍ତ୍ତବ୍ୟ ।"

କମଳ କହିଲେ, "ବାପା! ମଣିଷର ମୃତ୍ୟୁ କଥା କେହି କହିପାରିବ ନାହିଁ। ତୁମେ ଆଜି ନିରୋଗ ଅଛ, କାଲି ମରିଯାଇ ପାର। ମୁଁ ବି ଗାତ ଖୋଳି ରଖିଥାଏଁ! ତୁମକୁ ସମାଧି ଦେବା ବି ତ ମୋର କର୍ତ୍ତବ୍ୟ!"

କମଳର ଏ ଉତ୍ତର ଶୁଣି ତା' ବାପା ନିର୍ବାକ ରହିଲେ। ଗାତ ଖୋଳିବାକୁ ଆଉ ତାଙ୍କର ହାତ ଗଲା ନାହିଁ। ସେ ଧିରେ ଧିରେ ଶଗଡ଼ ଆଡ଼େ ଚାଲିଲେ। କମଳ ବି ତାଙ୍କୁ ଅନୁସରଣ କଲେ।

ଦୂରରୁ ଶଗଡ଼ ଆସୁଥିବାର ଦେଖି କମଳର ମା ଖୁସି ହୋଇ କବାଟ ଖୋଲିଲେ। ସେ ସ୍ୱାମୀ ଓ ପୁଅକୁ ଖୁଆଇବା ନିମନ୍ତେ ପିଠାପଣା ପ୍ରସ୍ତୁତ କରି ରଖିଥିଲେ।

କିନ୍ତୁ ଶଗଡ଼ ଠିଆ ହେବା ମାତ୍ରେ କମଳ ଡେଇଁ ପଡି ଜେଜେବାପାଙ୍କୁ ଧରାଧରି କରି ଓହ୍ଲାଇବାର ଦେଖି ତା' ମା ଆଶ୍ଚର୍ଯ୍ୟ ହୋଇଗଲେ। ସମସ୍ତେ ଘର ଭିତରକୁ ଆସିବା ପରେ ସେ ସ୍ୱାମୀଙ୍କୁ ପଚାରିଲେ, "ଇଏ କ'ଣ?"

"କମଳ ମୋତେ ସମାଧି ଦେବା ପାଇଁ ଗାତ ଖୋଳୁଥିଲା!" ସ୍ୱାମୀ ଉତ୍ତର ଦେଲେ।

"କ'ଣ କହିଲ? କମଳ ତମ ମୃତ୍ୟୁ କାମନା କରୁଥିଲା? ଏଡ଼େ ଆଦର ଯତ୍ନରେ ବଢ଼ାଇବାର ଫଳ ଏଇଆ?"

"ଆମ ବାପା ମା କ'ଣ ଆମକୁ ଆଦର ଯତ୍ନରେ ବଢ଼ାଇ ନଥିଲେ?" ମୃଦୁ ହସି ତାଙ୍କ ସ୍ୱାମୀ ଉତ୍ତର ଦେଲେ। ତା'ପରେ ସେ କହିଲେ, "କାହାରି ମୃତ୍ୟୁ କାମନା କରିବା ଅଥବା କାହାରି ମୃତ୍ୟୁ ତ୍ୱରାନ୍ୱିତ କରିବାର ଅଧିକାର ଆମର ନାହିଁ। ମୃତ୍ୟୁ ବିଧାତାର ବିଧାନ। ଆମକୁ ଆମ କର୍ତ୍ତବ୍ୟ କରିଯିବାକୁ ପଡିବ। କମଳ ଆଜି ମୋ ଆଖି ଖୋଲି ଦେଇଛି।"

ତାଙ୍କ ପତ୍ନୀ ନୀରବ ରହିଲେ। ସେ ମଧ୍ୟ ଏକଥାର ସତ୍ୟତା ଉପଲବ୍ଧି କଲେ।





ଭାରତ-କାହାଣୀ

# ସିପାହୀ ବିଦ୍ରୋହ

ଇଷ୍ଟଇଣ୍ଡିଆ କୋମ୍ପାନୀର ରାଜ୍ୟ ବିସ୍ତାର ଯେତିକି ବୃଦ୍ଧି ହେଲା, ସେତିକି ଅଧିକ ସୈନ୍ୟ ଆବଶ୍ୟକ ହେଲେ । ଭାରତୀୟ-ମାନଙ୍କୁ ସୈନ୍ୟବାହିନୀରେ ନିଆଗଲା । କିନ୍ତୁ ସେମାନଙ୍କ ଦରମା ଥିଲା ବହୁତ କମ । ଇଂରେଜ୍ ସୈନ୍ୟ ଘୋଡ଼ା ଚଢ଼ିବେ । ସେମାନଙ୍କ ବୋକଚା ବୋହି ଭାରତୀୟମାନେ ଚାଲିବେ ।

ସେତେବେଳେ ସୈନିକମାନଙ୍କୁ ଯେଉଁ ଠୋଠା ବନ୍ଧୁକ ଦିଆଯାଉଥିଲା, ସେଥିରେ ବ୍ୟବହୃତ ଗୋଳାକୁ ପ୍ରଥମେ ଦାନ୍ତରେ ଛିଣ୍ଡାଇବାକୁ ପଡୁଥିଲା । ସେ ଗୋଳା ଉପରେ ଚର୍ବିର ପ୍ରଲେପ ଥିଲା । ସୈନିକମାନଙ୍କ ଭିତରେ ପ୍ରଚାର ହୋଇଗଲା ଯେ ହିନ୍ଦୁ ଓ ମୁସଲ୍‌ମାନ ଉଭୟଙ୍କୁ ଧର୍ମଚ୍ୟୁତ କରିବା ନିମନ୍ତେ ସେଥିରେ ମିଶ୍ରିତ ଚର୍ବି ମଖାଯାଇଛି । ଏହା ସୈନିକମାନଙ୍କୁ ଉତ୍ତେଜିତ କଲା ।





୧୮୫୭ ମସିହା ମେ ୧୦ ତାରିଖ ଦିନ ମିରଟରେ ଅବସ୍ଥିତ ସୈନ୍ୟଦଳ ହଠାତ୍ ବିଦ୍ରୋହ କରି ସେମାନଙ୍କର ଇଂରେଜ୍ ହାକିମମାନଙ୍କୁ ବନ୍ଦୀ କଲେ । ଅନେକ ଦିନ ଧରି ଭିତରେ ଭିତରେ ଜୁହୁଳୁଥିବା କ୍ରୋଧ ସେଦିନ ଉପରକୁ ଫୁଟି ବାହାରି ପଡ଼ିଲା । ତେବେ ଖାଲି ମିରଟ ଛାଉଣୀରେ ବିଦ୍ରୋହ କରି ସେମାନେ କ୍ଷାନ୍ତ ରହିଲେ ନାହିଁ ।



ପ୍ରବଳ ଉତ୍ସାହରେ ସେମାନେ ଦିଲ୍ଲୀ ଚାଲିଲେ । ସେମାନଙ୍କ ଭିତରୁ କେହି ଅନ୍ୟାନ୍ୟ ସୈନ୍ୟ ଛାଉଣୀରେ ପହଞ୍ଚି ବିଦ୍ରୋହର ଖବର ଦେଲେ । ଅସନ୍ତୋଷ ଯେହେତୁ ଚତୁର୍ଦ୍ଦିଗରେ ବ୍ୟାପି ରହିଥିଲା, ବିଦ୍ରୋହ ବି ତେଣୁ ସହଜରେ ବ୍ୟାପିଗଲା । ଦିଲ୍ଲୀ ଅଭିମୁଖେ ଅଭିଯାନ କରିବା ଭିତରେ ସେମାନେ ଜନସାଧାରଣଙ୍କୁ ବିଦ୍ରୋହ ପାଇଁ ପ୍ରବର୍ତ୍ତାଇବାକୁ ଲାଗିଲେ ।

ବିଦ୍ରୋହୀମାନେ ଦିଲ୍ଲୀର ଲାଲ୍ କିଲ୍ଲାରେ ପହଞ୍ଚି ଯାଇ ମୋଗଲ ବଂଶଧର ବାହାଦୁର ଶାହ୍‌ଙ୍କୁ ସମ୍ରାଟ ବୋଲି ଘୋଷଣା କଲେ । ବାହାଦୁର୍ ଶାହ୍‌ଙ୍କର ଇଚ୍ଛା ଥାଉ ବା ନଥାଉ ସେ ବିଦ୍ରୋହ ପ୍ରତି ନିଜର ସମର୍ଥନ ଜ୍ଞାପନ କଲେ । ଦିଲ୍ଲୀରେ ଅବସ୍ଥାପିତ ଇଂରେଜ୍ ଫୌଜ୍ ପରାସ୍ତ ହେଲେ । ଦିଲ୍ଲୀ ବିଦ୍ରୋହୀମାନଙ୍କ ଦଖଲ୍‌କୁ ଆସିଗଲା ।





ବିଥୁରଠାରେ ପେଶବା ଦ୍ୱିତୀୟ ବାଜିରାଓଙ୍କ ପୋଷ୍ୟପୁତ୍ର ନାନା ସାହେବଙ୍କୁ ତାଙ୍କର ସୁଯୋଗ୍ୟ ସେନାପତି ତାନ୍ତିଆ ଟୋପି ରାଜପଦରେ ଅଭିଷିକ୍ତ କଲେ । ନାନା ସାହେବଙ୍କୁ ଇଂରେଜମାନେ ପେଶବାଙ୍କ ଉତ୍ତରାଧିକାରୀ ବୋଲି ସ୍ୱୀକାର କରିବାକୁ ନାସ୍ତି କରିଦେଇଥିଲେ । ଏହାପରେ ଉଭୟ ନାନା ସାହେବ ଓ ତାନ୍ତିଆ ଟୋପି ପୂର୍ଣ୍ଣପ୍ରାଣରେ ବିଦ୍ରୋହର ନେତୃତ୍ୱ ନେଲେ ।

ଝାନ୍ସିର ରାଣୀ ଲକ୍ଷ୍ମୀବାଈ ଯଥାବିଧି ପୋଷ୍ୟପୁତ୍ର ଗ୍ରହଣ କରିଥିବା ସତ୍ତ୍ୱେ ଇଂରେଜ୍‌ମାନେ ତାଙ୍କର ଉତ୍ତରାଧିକାରୀ ନାହାନ୍ତି ବୋଲି କହି ତାଙ୍କ ରାଜ୍ୟ ହସ୍ତଗତ କରିବାକୁ ସୈନ୍ୟ ଧରି ପହଞ୍ଚିଗଲେ । ରାଣୀ ନିଜେ ନିଜ ସୈନ୍ୟବାହିନୀର ନେତୃତ୍ୱ ନେଇ ଇଂରେଜ୍‌ମାନଙ୍କୁ ପରାସ୍ତ କଲେ ଓ ସେମାନଙ୍କ ସେନାପତିମାନଙ୍କୁ ବନ୍ଦୀ କଲେ ।






ରାଣୀ ସେମାନଙ୍କୁ କହିଲେ, "ତମେ-ମାନେ ଭୟ କରିବାର କାରଣ ନାହିଁ । କିନ୍ତୁ ତମ ଶାସକମାନଙ୍କୁ ଜଣାଇଦିଅ ଯେ ଆମ ପରମ୍ପରା ଉପରେ ହସ୍ତକ୍ଷେପ କରିବାର ଅଧିକାର ସେମାନଙ୍କର ନାହିଁ ।" କିନ୍ତୁ ରାଣୀଙ୍କର ସୌଜନ୍ୟ ପ୍ରତି ସମ୍ମାନ ଦେଖାଇବା ତ ଦୂରର କଥା, ଗୋଟାଏ ବିଶାଳ ସୈନ୍ୟବାହିନୀ ଧରି ଜଣେ ବିଶିଷ୍ଟ ସେନାପତି ସାର ହ୍ୟୁଗ୍ ରୋସ୍ ଝାନ୍ସି ଆକ୍ରମଣ କଲେ ।

ପୁରୁଷ ସୈନିକ ବେଶରେ ରାଣୀ ନିଜ ଦୁର୍ଗ ରକ୍ଷା କରିବା ଢଗରେ ଆଶ୍ଚର୍ଯ୍ୟ-ଜନକ ସାହସ ଦେଖାଇଲେ । କିନ୍ତୁ ହ୍ୟୁଗ୍ ରୋସ୍ ଥିଲେ ଅତ୍ୟନ୍ତ କୌଶଳୀ ଓ ଅଭିଜ୍ଞ ସେନାପତି । ସଂଖ୍ୟାରେ ଓ ଅସ୍ତ୍ରଶସ୍ତ୍ରରେ ତାଙ୍କ ସୈନ୍ୟଦଳ ଝାନ୍ସି ବାହିନୀଠାରୁ ବହୁତ ଅଧିକ ଉନ୍ନତ ଥିଲେ । ଘମାଘୋଟ ଯୁଦ୍ଧ ପରେ ଦୁର୍ଗର ପତନ ହେଲା, କିନ୍ତୁ ରାଣୀ ତାଙ୍କ ଶିଶୁ ପୋଷ୍ୟପୁତ୍ରଙ୍କୁ ଧରି ଖସି ଚାଲିଗଲେ ।





ଅଚରେ ରାଣୀଙ୍କ ସହ ନାନା ସାହେବଙ୍କ ସେନାପତି ତାନ୍ତିଆ ଟୋପି ଯୋଗ ଦେଲେ । ବିଦ୍ରୋହୀ ବାହିନୀ ଗ୍ୱାଲିଅର୍ ଆକ୍ରମଣ କଲେ, କାରଣ ଗ୍ୱାଲିଅର୍‌ର ସିନ୍ଧିଆ (ରାଜା) ଇଂରେଜ୍‌ମାନଙ୍କୁ ସମର୍ଥନ କରୁଥିଲେ । ସିନ୍ଧିଆ ପଳାଇ ଗଲେ । ଗ୍ୱାଲିଅର ସୈନ୍ୟମାନେ ରାଣୀଙ୍କ ନେତୃତ୍ୱ ସ୍ୱୀକାର କଲେ । ସେଠାରେ ଥିବା ଇଂରେଜମାନେ ପରାଜିତ ହୋଇ ପଳାଇଲେ ।

ସାର୍ ହ୍ୟୁଗ୍ ରୋସ୍ ଗ୍ୱାଲିଅର ପତନର ସମ୍ବାଦ ପାଇ ଯଥାଶୀଘ୍ର ସେଠାରେ ପହଞ୍ଚିଲେ । ରାଣୀଙ୍କ ସହ ତାଙ୍କର ହେଲା ଭୀଷଣ ଯୁଦ୍ଧ । ରାଣୀ ପ୍ରାଣମୂର୍ଚ୍ଛା ଯୁଦ୍ଧ କରି ଶେଷକୁ ହଟିଗଲେ । ଇଂରେଜ୍ ବାହିନୀ ତାଙ୍କୁ ଅନୁସରଣ କଲେ ଓ ରାସ୍ତାରେ ବି ବାରମ୍ବାର ଯୁଦ୍ଧ ହେଲା । ଇଂରେଜ୍‌ମାନେ ତାଙ୍କୁ ଆହତ କଲେ, କିନ୍ତୁ ଧରି ପାରିଲେ ନାହିଁ ।





୧୮୫୮ ର ଜୁନ୍ ୧୭ ତାରିଖ ଦିନ ଆହତ ରାଣୀ ଗୋଟିଏ ଉଦ୍ୟାନରେ ଆଶ୍ରୟ ନେଇଥିବା ଅବସ୍ଥାରେ ପ୍ରାଣ ତ୍ୟାଗ କଲେ । ଶତ୍ରୁ ପକ୍ଷ ଆସି ସେଠାରେ ପହଞ୍ଚିବା ପୂର୍ବରୁ ତାଙ୍କ ଅନୁଗତ ଲୋକେ ତାଙ୍କ ଶବ ଦାହ ଶେଷ କଲେ । ଝାନ୍ସୀ ରାଣୀ ଲକ୍ଷ୍ମୀବାଈ ପୃଥିବୀର ଇତିହାସରେ ଅନ୍ୟତମ ଶ୍ରେଷ୍ଠ ସାହସୀ ଓ ମହତ୍ ଚରିତ୍ର ।



# ଆଖି ଥାଇ ଅନ୍ଧ

ଉଦୟଗିରି ନଗରୀର ଶାସନକର୍ତ୍ତା ରୂପେ ପୁରନ୍ଦର ନାମକ ଅମାତ୍ୟ ନିଯୁକ୍ତ ହୋଇଥିଲେ । ମହାରାଜା ତାଙ୍କୁ ନିଯୁକ୍ତ କରିଥିଲେ ସତ, କିନ୍ତୁ ସେ ନଗରୀରେ ଲୋକେ ପୁରନ୍ଦରଙ୍କୁହିଁ ରାଜା ଭଳି ଦେଖୁଥିଲେ ।

ପୁରନ୍ଦରଙ୍କ ପ୍ରତି ଲୋକଙ୍କର ସେଭଳି ସମ୍ମାନ ରହିବାର ବିଶେଷ କାରଣ ଥିଲା । ଉଦୟଗିରିରେ ଅନେକ ଦିନ ଧରି ଅରାଜକତା ବ୍ୟାପି ରହିଥିଲା । ଚୋର, ଡାକୁ ଓ ଗୁଣ୍ଡାମାନେ ଜନସାଧାରଣଙ୍କୁ ଆତଙ୍କିତ କରି ରଖିଥିଲେ । ରାତି ହେଲେ ନାଗରିକମାନେ ଆଉ ରାସ୍ତାକୁ ବାହାରୁ ନଥିଲେ ।

ମହାରାଜା ଏଭଳି ପରିସ୍ଥିତିର ପରିଚୟ ପାଇ ତାଙ୍କର ବିଶ୍ୱସ୍ତ ଅମାତ୍ୟ ଓ ଦକ୍ଷ କର୍ମଚାରୀ ପୁରନ୍ଦରଙ୍କୁ ସେଠାକୁ ପଠାଇଥିଲେ ।

ପୁରନ୍ଦର ଉଦୟଗିରିରେ ପହଞ୍ଚି ସଙ୍ଗେ ସଙ୍ଗେ ନଗରୀର ସବୁ କର୍ମଚାରୀମାନଙ୍କର ବୈଠକ ଡକାଇ କହିଦେଲେ, "ପନ୍ଦର ଦିନ ଭିତରେ ଯଦି ନଗରୀରେ ସ୍ୱାଭାବିକ ଅବସ୍ଥା ବିରାଜ ନ କରିଛି, ତେବେ ସମସ୍ତଙ୍କର ଚାକିରି ଯିବ—ଦୁଷ୍ଟ କର୍ମଚାରୀମାନେ କାରାଦଣ୍ଡ ଭୋଗିବେ । ଏଥିରେ ଅନ୍ୟଥା ହେବ ନାହିଁ ।"

ଏହାପରେ ସେ ନିଜେ ଦିନରାତି ସମସ୍ତଙ୍କ କର୍ମତତ୍ପରତା ଲକ୍ଷ୍ୟ କରିବାକୁ ଲାଗି ପଡିଲେ । ସବୁ କର୍ମଚାରୀ ଯଦି ସାଧୁ ସଚ୍ଚୋଟ ଭାବରେ ଓ ନିଷ୍ଠାପର ଭାବରେ ନିଜ କର୍ତ୍ତବ୍ୟ କରିବେ, ତେବେ କୌଣସି ସ୍ଥାନରେ ବିଶୃଙ୍ଖଳା ରହିବ ନାହିଁ । ଉଦୟଗିରିରେ ବି ତାହାହିଁ ହେଲା । ପନ୍ଦରଦିନ କାହିଁକି, ଦଶଦିନ ଭିତରେହିଁ ସବୁ ବିଶୃଙ୍ଖଳା ଦୂର ହୋଇଗଲା ।

ଲୋକେ ପୁରନ୍ଦରଙ୍କୁ ଧନ୍ୟ ଧନ୍ୟ କଲେ । ସାଧାରଣ ସଭାରେ ତାଙ୍କୁ ବିପୁଳ ଅଭିନନ୍ଦନ ଦିଆଗଲା ।

ରାଜେନ୍ଦ୍ର




ପୁରନ୍ଦର ନିଜ କାର୍ଯ୍ୟରେ ଅତି ଶୀଘ୍ର ସାଫଲ୍ୟ ଅର୍ଜନ କରିଥିବା ହେତୁ ମହାରାଜାଙ୍କ ପାଖରୁ ମଧ୍ୟ ସନନ୍ଦ ଲାଭ କଲେ ।

ଏହା ପରେ ସେ କିଛିଦିନ ବିଶ୍ରାମ ନିମନ୍ତେ କୌଣସି ଦୂରବର୍ତ୍ତୀ ସ୍ଥାନକୁ ଚାଲିଗଲେ । ସେଠାରୁ ଫେରି ଆସି ଉଦୟଗିରିରେ ଆନନ୍ଦରେ ରହିଲେ । ସବୁଦିନେ କିଛି ନା କିଛି ଲୋକ ଆସି ତାଙ୍କର ପ୍ରଶଂସା ଗାନ କରୁଥାନ୍ତି ।

ପୁରନ୍ଦର ତେଣିକି ଆଉ ରାଜକାର୍ଯ୍ୟରେ ବିଶେଷ ମନ ଦେବାର ଆବଶ୍ୟକତା ଅନୁଭବ କଲେ ନାହିଁ । ଅବସ୍ଥା ସୁଧାରି ଯାଇଛି ବୋଲି ନିଶ୍ଚିନ୍ତ ହୋଇ ସେ ବାରମ୍ବାର ଛୁଟିରେ ଗଲେ । ନାଚ ଗୀତ ଉପଭୋଗ କରିବାରେ ବହୁ ସମୟ ମଧ୍ୟ ଦେଲେ । ଖୋସାମୋଦିଆ-ମାନେ ସବୁଦିନେ ତାଙ୍କୁ କହୁଥାନ୍ତି, "ଆପଣଙ୍କ ଉଦ୍ୟମରେ ଆମର ଏଠି ରାମରାଜ୍ୟର ପ୍ରଚଳନ ହୋଇଛି । ଆହା! ଆପଣ କେଡ଼େ ଦକ୍ଷ! କେଡ଼େ ବୁଦ୍ଧିମାନ!"

ପୁରନ୍ଦର ହସି ଦେଉଥିଲେ । ସେ ଏ ପ୍ରଶଂସା ଖୁବ୍ ଉପଭୋଗ କରୁଥିଲେ ।

ବର୍ଷଟିଏ ବିତିଗଲା । ଦିନେ ଉଦୟପୁରର ଦଳେ ବିଶିଷ୍ଟ ନାଗରିକ ଆସି ତାଙ୍କୁ ସାକ୍ଷାତ୍ କରି କହିଲେ, "ହଜୁର୍, କିଛିଦିନ ହେଲା ହଠାତ୍ ଚୋର ଡାକୁଙ୍କ ଉତ୍ପାତ ବଢ଼ି ଗଲାଣି । ପ୍ରତ୍ୟେକ ରାତିରେ ସହରର କୌଣସି ନା କୌଣସି ସ୍ଥାନରେ ଜଣେ ଅଧେ ଯାତ୍ରୀ ଡାକୁଙ୍କ ହାବୁଡ଼ରେ ପଡୁଛନ୍ତି ।"

ପୁରନ୍ଦର ଏଭଳି ଅଭିଯୋଗ ଶୁଣି ଚିନ୍ତିତ ହେବା ଦୂରର କଥା, ହଠାତ୍ କ୍ରୋଧାନ୍ୱିତ ହୋଇ କହିଲେ, "ମିଛ କଥା । ମୋତେ ବଦ୍‌ନାମ କରିବା ପାଇଁ ଏହା କାହାର ଷଡ଼ଯନ୍ତ୍ର!"

ଅଭିଯୋଗକାରୀମାନେ ପୁରନ୍ଦରଙ୍କର ଏଭଳି ପ୍ରତିକ୍ରିୟା ଦେଖି ଡରିଗଲେ । ପୁରନ୍ଦର ସେମାନଙ୍କୁ କଟମଟ କରି ଅନାଇଲେ ।

"ହଜୁର୍, ଆପଣଙ୍କୁ ଆମେ ଦେବତା ଭଳି ଜ୍ଞାନ କରୁଁ । କିନ୍ତୁ ଯାହା ଘଟୁଛି, ତାହା ଆପଣଙ୍କ ଗୋଚରକୁ ଆଣିବା ଆମର କର୍ତ୍ତବ୍ୟ ନୁହେଁ କି?" ଲୋକେ କହିଲେ ।

"ଏଭଳି ମିଥ୍ୟା ଅଭିଯୋଗ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ଏତେ ବଡ଼ ନଗରୀରେ କାହିଁ କେଉଁଠି ଗୋଟିଏ ଅଧେ ଚୋରି ହେବା ବିଚିତ୍ର ନୁହେଁ । କିନ୍ତୁ ଆପଣ-ମାନେ ଅତିରଞ୍ଜନ କରୁଛନ୍ତି ।" ପୁରନ୍ଦର ଟୋକ୍‌ଠୋକ୍ ଶୁଣାଇ ଦେଲେ ।

ନାଗରିକମାନେ ମୁଣ୍ଡ ତଳକୁ କରି ଚାଲିଗଲେ । ପୁରନ୍ଦର ନିଜର ମୁଖ୍ୟ ପରା-ମର୍ଶଦାତା ନାଗବର୍ମାଙ୍କ ଆଡ଼େ ଅନାଇ କହିଲେ, "ଦେଖୁଛ ତ? ମୋତେ ବଦ୍‌ନାମ କରିବାର ଚେଷ୍ଟା ହେଲଣି ।"

"ଆଜ୍ଞା, ଆପଣଙ୍କୁ ବଦ୍‌ନାମ କରିବାର ଉଦ୍ଦେଶ୍ୟ ଥିଲେ ସେମାନେ ସିଧା ରାଜାଙ୍କ ପାଖରେ ଯାଇ କହନ୍ତେ । ମୋର ଧାରଣା, ସେମାନଙ୍କ ଅଭିଯୋଗ ସତ୍ୟ ।" ନାଗବର୍ମା କହିଲେ ।

"ପାଗଳ!" ପୁରନ୍ଦର ମନ୍ତବ୍ୟ ଦେଲେ ।

ସେଦିନ ରାତିରେ ପୁରନ୍ଦର ନଗରର ଜଣେ ବିଶିଷ୍ଟ ବଣିକଙ୍କ ଘରେ ଭୋଜନ କଲେ । ଗପସପ ହେଉଁ ହେଉଁ ଅଧା ରାତି ହୋଇ ଯାଇଥାଏ । ସେ ଇଚ୍ଛାକରି ଦେହରକ୍ଷୀ ନେଇ ନଥିଲେ । ତେବେ ତାଙ୍କ ସାଙ୍ଗରେ ନାଗବର୍ମା ଓ ତାଙ୍କ ବ୍ୟକ୍ତିଗତ ଚାକର ଥିଲେ ।

ରାତିରେ ସେ ବସାକୁ ଫେରୁଛନ୍ତି, ହଠାତ୍ ତିନି ଚାରିଜଣ ଗୁଣ୍ଡା ତାଙ୍କୁ ଧରି ପକାଇଲେ । ତେବେ ସେମାନେ ବୋଧହୁଏ ତାଙ୍କୁ ଚିହ୍ନି ପକାଇଲେ ଓ ଛାଡ଼ିଦେଇ ପଳାଇଗଲେ । ପୁରନ୍ଦର ଦେଖିଲେ ତାଙ୍କ ବେକରେ ରତ୍ନ-



ହାରଟି ନାହିଁ । "ଧର, ଧର!" ପାଟିକରି ସେ ଗୁଣ୍ଡାଙ୍କୁ ଅନୁସରଣ କଲେ । ତାଙ୍କ ପଛରେ ଦୌଡ଼ିଲେ ନାଗବର୍ମା ଓ ପରିଗୃହକ ।

ଗୋଟାଏ ଗଳି ଭିତରୁ ହଠାତ୍ ବେକରେ ରତ୍ନହାର ପକାଇଥିବା ଜଣେ ଲୋକ ବାହାରି ଆସିଲା । "ହାର ଦେଇ ଦେ!" ପାଟି କରି ପୁରନ୍ଦର କହିଲେ । ଲୋକଟି ସଙ୍ଗେ ସଙ୍ଗେ ନିଜ ବେକରୁ ରତ୍ନହାର ବାହାର କରି ପୁରନ୍ଦରଙ୍କୁ ଧରାଇ ଦେଇ ପଳାଇଗଲା ।

ଜହ୍ନ ଆଲୁଅରେ ପୁରନ୍ଦର ହାରଟି ଦେଖି କହିଲେ, "ଆରେ, ଏ ହାର ତ ମୋର ନୁହେଁ!" ସେତେବେଳକୁ ନାଗବର୍ମା ପାଖକୁ ଆସିଯାଇଥିଲେ । ସେ କହିଲେ, "ଆଜ୍ଞା, ଆପଣଙ୍କ ହାର ପରା ଆଜି ସକାଳେ ମରାମତି ହେବାକୁ ଯାଇଛି!"

"ଠିକ୍ କଥା ତ! ତେବେ ଲୋକଟି ମୋତେ ହାର ଦେଇଦେଲା କାହିଁକି?" ପୁରନ୍ଦର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ସେ ଆପଣଙ୍କୁ ଡାକୁ ବୋଲି ଧରିନେଇ ଭୟରେ ଦେଇଦେଲା ଆଜ୍ଞା!"

"କ'ଣ ହେଲା, ମୁଁ ନଗରର ରକ୍ଷାକର୍ତ୍ତା । ମୋତେ ସେ ଡାକୁ ବୋଲି ଭାବିଲା!" ପୁରନ୍ଦର କ୍ଷୋଭରେ କହିଲେ ।

"ଆଜ୍ଞା, ଯେତେବେଳେ କୌଣସି ମୁଲକରେ ଅରାଜକତା ହୁଏ, ସେତେବେଳେ ଲୋକେ ଯେ ଖାଲି ଧନସମ୍ପଦ ହରାନ୍ତି, ତାହା ନୁହେଁ, ତାହାଠୁଁ ଯାହା ବଡ଼, ସେହି ବିଶ୍ୱାସ ହରାଇ ବସନ୍ତି । ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅବିଶ୍ୱାସ କରନ୍ତି । ବର୍ତ୍ତମାନ ତାହାହିଁ ହୋଇଛି । ବାସ୍ତବିକ ଚୋର ଡାକୁ ପୁଣି ବ୍ୟାପିଲେଣି ବୋଲି ସେ ଲୋକ ଆପଣଙ୍କୁ ଦେଖି ଏମିତି ଡରିଗଲା!" ନାଗବର୍ମା ଭଲଭାବେ ବୁଝାଇ ଦେଲେ ।

ଏଥର ପୁରନ୍ଦର ବୁଝିଲେ । ଶାସନ କାର୍ଯ୍ୟରେ ଟିକିଏ ହେଲା କଲେ ଫଳ କ'ଣ ହୁଏ, ତାହା ବି ସେ ହୃଦୟଙ୍ଗମ କଲେ ।





# ନିଷ୍ଠୁରତାର ପ୍ରତିଫଳ

ନଟବର ପିଲାଦିନେ ଖୁବ୍ ଦୁଷ୍ଟ ଥିଲା । ଚଗଲାମି କରିବାରେ ଦିନଯାଏ । ବେଳେ ବେଳେ ନିଜ ଖୁସି ପାଇଁ ପଶୁମାନଙ୍କ ସହିତ ଲାଗି ତାଙ୍କୁ ହଇରାଣ କରେ ।

ଦୁର୍ଭାଗ୍ୟକୁ ଥରେ ଛୋଟ କୁକୁରଛୁଆଟିଏ ତା' ହାବୁଡ଼ରେ ପଡ଼ିଲା । ନଟର ବାପା ସବୁଦିନେ ଟିକିଏ ଚୁଟି ଦେବାରୁ ସେ ସେଠିକି ଆସେ । ନଟ ସୁଯୋଗ ଦେଖି ତାକୁ ବହୁତ ହଇରାଣ କରେ । ଯେତେବେଳେ ଭୋକରେ ସେ ଖାଦ୍ୟ ପାଖକୁ ଦୌଡ଼େ ନଟ ଖାଦ୍ୟ ପାତ୍ର କେଉଁଠି ଲୁଚାଇ ଦିଏ ।

ବେଳେ ବେଳେ ନଟ କୁକୁରଛୁଆକୁ ନେଇ ଗଛର ଉଚ୍ଚ ଡାଳରେ ବସାଇ ଦିଏ । ଭୟରେ ତା'ର ପ୍ରାଣ ଛଟପଟ ହୁଏ । ସେ କୁଇଁକୁଇଁ କରି ଅନବରତ ବୋବେଇ ଚାଲେ । ଏ କଥା ଦେଖି ନଟ ହସି ହସି ଗଡ଼େ । ଏପରି ସବୁ ନ କରିବା ପାଇଁ ତା'ର ବାପା ତାକୁ ବହୁତ ବୁଝାନ୍ତି, କିନ୍ତୁ ଫଳ କିଛି ହୁଏ ନାହିଁ ।

ଧୀରେ ଧୀରେ ନଟବର ବଡ଼ ହେଲା । ନିଜ ଚଗଲାମି ଯୋଗୁ ବେଶି ପଢ଼ି ପାରି ନଥାଏ । ଦେଶରେ ଅକାଳ ପଡ଼ିଲା । ତା'ର ବୁଢ଼ା ବାପା ରୋଗାକ୍ରାନ୍ତ ହୋଇ ମରିଗଲେ । ଏଣେ ଗ୍ରାମରେ ଫସଲ ନାହିଁ, ଖାଦ୍ୟାଭାବ । ସେ ଅନନ୍ୟୋପାୟ ହୋଇ ସହରକୁ ଚାଲିଗଲା ।

ଭାଗ୍ୟକୁ ସହରରେ ପହଞ୍ଚି ତାକୁ ଜଣେ ସେଠଙ୍କ ଘରେ କାମ ମିଳିଗଲା । ଖାଇପିଇ ପଚାଶ ଟଙ୍କା ମାସକୁ ଦରମା । ସେଠଜୀ ଥିଲେ ଖୁବ୍ ଧାର୍ମିକ ଓ ଚରିତ୍ରବନ୍ତ ।

ସେଠଙ୍କର ଦଶବର୍ଷର ପୁଅ ଶେଖର ନଟଠାରୁ କାହାଣୀ ଶୁଣିବାକୁ ଜିଦ୍ କରେ ।

ସୁରେନ୍ଦ୍ର



ସେଥିରେ କାମରେ ଗୋଳମାଳ ହୋଇ ନଟ ଗାଳି ଶୁଣେ । ଦିନେ ସେ ନଟକୁ କହିଲେ, "ମନେହୁଏ ତୋର ଆଉ କାମ ପାଇଁ ଇଚ୍ଛା ନାହିଁ । ଏପରି କାମରେ ହେଳା କଲେ ତୋତେ କାମ ଛାଡ଼ି ଚାଲିଯିବାକୁ ପଡ଼ିବ ।"

କାମରୁ ବାହାରିଯିବା ଡରରେ ସେ ସେଠଜୀଙ୍କୁ ସବୁ କହିଲା । ସେଠଜୀ ଶେଖରକୁ ଗାଳି ଦେଲେ । ସେଇ ଦିନଠୁ ଶେଖର ନଟକୁ ଆହୁରି ହଇରାଣ କରିବାକୁ ଲାଗିଲା ।

ଥରେ ଖୁବ୍ ଶୀତ ପଡ଼ୁଥାଏ । ଦିନେ ସକାଳୁ ଶେଖର କିଛି ଗରମ ଲୁଗା ଧରି ନଟ ପାଖକୁ ଆସି କହିଲା, "ଏ ଭୟଙ୍କର ଥଣ୍ଡାରେ ଦେହ କମ୍ପି ଯାଉଛି । ଏସବୁ ଗରମ ଲୁଗା ବ୍ୟବହାର କଲେ ବହୁତ ଆରାମ । ତୁ ପୁରୁଣା କୁର୍ତ୍ତା ଲୁଗା ସବୁ କାଢ଼ିପକା ଏଗୁଡ଼ିକ ମୁଁ ତୋତେ ଦେବି ।"

ଗରମ ଲୁଗା ଲୋଭରେ ନଟବର ପୁରୁଣା ଲୁଗା କାଢ଼ିଦେଲା ଓ ଗାମୁଛାଟିଏ ପିନ୍ଧି ଠିଆ ହୋଇ ଭାବୁଥାଏ, "ଆଃ ଶେଖରବାବୁ କି ଦୟାଳୁ ।" କିନ୍ତୁ ଏ କ'ଣ ? ଶେଖର ତା'ର ବଡ଼ କୁକୁରଟିକୁ ଡାକି ନଟବର ପଛରେ ଗୋଡ଼ାଇବାକୁ ନିର୍ଦ୍ଦେଶ ଦେଲା । ଆଉ କହିଲା, "ତୁ ଶୀଘ୍ର ଏଠୁ ପଳା ନଇଲେ ତତେ ଟିକି ଟିକି କରି କାଟିଦେବ ।"

ଥଣ୍ଡାରେ ପୁଣି କୁକୁର ଭୟରେ ନଟର ସାରା ଦେହ କମ୍ପୁଥାଏ । ଶେଖରର ଏପରି ନିର୍ଦ୍ଦୟ ବ୍ୟବହାରରେ ସେ ଦୁଃଖ କରିବ ନା ଆଶ୍ଚର୍ଯ୍ୟ ହେବ ସେକଥା ଭାବିବାକୁ ତା'ର ସମୟ ନଥିଲା । କୁକୁରର ଗର୍ଜ୍ଜନ ଶୁଣି ସେ ପଟପଟିଆ ଦୌଡ଼ିଲା । କୁକୁର ମଧ୍ୟ ଦୌଡ଼ିଲା । ନଟ ଦୌଡ଼ି ଦୌଡ଼ି ହାଙ୍ଫି ଯାଇ କାନ୍ଦିବାକୁ ଆରମ୍ଭ କଲା ।

ତା'ପରେ ଶେଖର କୁକୁରକୁ ଡାକି ନେଲା ଓ ନଟକୁ କହିଲା, "ପ୍ରକୃତରେ ଏ ଲୁଗା ଟିକିଏ ଥଣ୍ଡା ଥିଲା, ଏବେ ତୋ ଦେହ ଗରମ ହୋଇ ଯାଇଥିବ । ଏଇ ଲୁଗା ପିନ୍ଧି ଦେ ।"

ଶେଖର ଦେଖିଲା ଦାମୀ ପୋଷାକଗୁଡ଼ିକ ସବୁ ଓଦା । ସେ ତେଣୁ ଚୁପ୍‌ଚାପ୍ ନିଜର

ଘୃଣା ଲଗା ପିଛିଲ । ଶେଖରର ଏଇ ନିଷ୍ଠୁର ଥଟ୍ଟା ତାକୁ ଭଲ ଲଗିଲ ନାହିଁ । ସେ ମନେ ମନେ ସ୍ଥିର କଲ ଏସବୁ ସେଠଜୀଙ୍କୁ କହିବ ।

ସେ ସେଠଙ୍କ ପାଖରେ ପହଞ୍ଚି ଦେଖିଲ ଆଉ ଜଣେ ଚାକର ମଧ୍ୟ ସେଠଙ୍କ ପାଖରେ ଶେଖରର ଦୁଷ୍ଟାମୀ ବିଷୟରେ ଅଭିଯୋଗ କରୁଛି । ସେଠ ତାକୁ ବୁଝାଉଥା'ନ୍ତି, "ଶେଖର ଯଦି କାମ ବେଳେ ତୁମ ସହିତ ବଦମାସି କରେ ତ ତାକୁ ମୁଁ ଦଣ୍ଡ ଦେବ । କିନ୍ତୁ ଅନ୍ୟ ସମୟରେ ଯଦି ଟିକିଏ କ'ଣ ମଜା କରୁଛି ତ ସେସବୁ ମୋ ପାଖରେ ଅଭିଯୋଗ କରିବାର କୌଣସି କାରଣ ନାହିଁ । ଯାହାହେଲେ ବି ସେ ପିଲା, ଦୁଷ୍ଟାମୀ କରିବହିଁ । ତେଣୁ ପ୍ରତ୍ୟେକ କଥାରେ ଅଭିଯୋଗ କଲେ ଶୁଣିବାକୁ ମୋର ଏତେ ସମୟ ନାହିଁ ।" ସେଠଜୀଙ୍କର କଥା ଶୁଣି ନଟବର ମଧ୍ୟ ଅଭିଯୋଗ ନ କରି ଫେରି ଆସିଲ ।

ସେଠଜୀଙ୍କ ଘରେ ଅନେକ ଚାକର ଥିଲେ । କିନ୍ତୁ ଶେଖର ସବୁଠାରୁ ବେଶି ହଇରାଣ କରେ ନଟକୁ । ଦିନେ ଜଣେ ଚାକର ଶେଖରକୁ ଗୋଟିଏ କୁକୁରଛୁଆ ଆଣି ଦେଲ । ତା'ପରେ ସେ ଯାଇ ନଟବରକୁ କହିଲ, "ଏଣିକି ଶେଖର ଆଉ ତୋତେ ବେଶି ହଇରାଣ କରିବ ନାହିଁ । କାରଣ ତା' ସହିତ



ଖେଳିବାକୁ ମୁଁ ଗୋଟିଏ କୁକୁରଛୁଆ ଆଣି ଦେଇଛି ।" ନଟବର ଏକଥା ଶୁଣି ଖୁସି ହେଲ ।

କିନ୍ତୁ କୁକୁରଛୁଆ କଥା ଶୁଣି ତା'ର ପିଲାଦିନର ଘଟଣା ସବୁ ମନେ ପଡ଼ିଲ । ସେ ଏତେଦିନେ ଉପଲବ୍ଧି କଲ କି ତା'ର ପିଲାଦିନର କୁକର୍ମର ଫଳ ଏବେ ସେ ଭୋଗ କରୁଛି ।

ତା'ପରେ ସେ ଶେଖରର କୁକୁରଛୁଆ କଥା ଭାବିଲ । "ଯଦି ଶେଖର ମୋ ପ୍ରତି ଏତେ ନିଷ୍ଠୁର ହୋଇ ପାରୁଛି, କୁକୁରଛୁଆକୁ ତ ଆହୁରି ନିଷ୍ଠୁର ବ୍ୟବହାର କରିବ । ତେଣୁ ଏବେ ମୁଁ ଯଦି ଛୁଆଟିର ଯତ୍ନ



ନେବ ତେବେ ପିଲାଦିନେ କରିଥିବା ପାପର ପ୍ରାୟଶ୍ଚିତ କରିବ ।"

ସେ ଯାଇ ଶେଖର ପାଖରେ ପହଞ୍ଚି ଦେଖିଲା ଶେଖର କୁକୁରଛୁଆକୁ ତା'ର ବଡ଼ ଶିକାରି କୁକୁର ପାଖରେ ଛାଡ଼ୁଛି । ସେ ଭୟରେ କୁଇଁକୁଇଁ କରି ବୋବାଉଛି, ଏବେ ସେ ଉପଲବ୍ଧି କଲା ତା'ର ପିଲାବେଳର ଦୁଷ୍କାମୀ । ସେ ଶେଖରକୁ ଗାଳିଦେଇ କହିଲା, "ତୋର ଯଦି ଏପରି ନିର୍ମମ ନିର୍ଯ୍ୟାତନା ଦେବାରେ ମଜା ହେଉଛି ତେବେ ବରଂ ମୋତେ ଦେ; କିନ୍ତୁ ଏଇ ଅସହାୟ ପ୍ରାଣୀକୁ କାହିଁକି କଷ୍ଟ ଦେଉଛୁ? ତା'କୁ ଛାଡି ଦେ ।"

"ତୁ କିଏ ମୋତେ କହିବାକୁ? ଚାଲି ଯା ଏଠୁ କହୁଛି ।" କହି ଶେଖର ଛୁଆକୁ ଜାବୁଡ଼ି ଧରିଲା । ନଟ ମଧ୍ୟ ରାଗିଗଲା ଓ ସମସ୍ତ ଶକ୍ତି ଖର୍ଚ୍ଚ କରି କୁକୁରଛୁଆକୁ ଛଡ଼ାଇଲା; ଯେତେବେଳେ ନ ପାରିଲା ରାଗରେ ଶେଖରକୁ ଗୋଟାଏ ଚାପଡ଼ ମାରି କୁକୁରଛୁଆକୁ ଛଡ଼ାଇ ନେଇ ଚାଲିଗଲା ।

ସେଠଙ୍କ ପାଖରେ ଯାଇ ଏ ଖବର ପହଞ୍ଚିଲା । ସେ ରାଗିଯାଇ କହିଲେ, "ଚାକରଙ୍କ ମୁହଁ ଦେଖ! ମୋ ପୁଅ ଉପରେ ହାତ ଉଠାଇଲା? ସେ ସଙ୍ଗେ ସଙ୍ଗେ ନଟକୁ ଡାକି ଏହାର କାରଣ ପଚାରିଲେ ।

ନଟବର ଶାନ୍ତ ହୋଇ ଓ ନିର୍ଭୟ ହୋଇ ଠିଆ ହୋଇଥାଏ । ସେ ଉତ୍ତର ଦେଲା, "ମାଲିକ୍, ଶେଖର ଏହି ଅସହାୟ କୁକୁର-ଛୁଆକୁ ଖୁବ୍ ନିର୍ଯ୍ୟାତନା ଦେଉଥିଲା । ସେ ମୋତେ ମଧ୍ୟ ଅତ୍ୟନ୍ତ ନିର୍ମମ ଭାବରେ ନିର୍ଯ୍ୟାତନା ଦେଇଛି । ମୁଁ କିନ୍ତୁ ସବୁ ସହ୍ୟ କରିଛି ଏବଂ ଆପଣଙ୍କ ପାଖରେ ତା' ବିରୁଦ୍ଧରେ କିଛି ଅଭିଯୋଗ କରିନାହିଁ । କିନ୍ତୁ ଅସହାୟ ପ୍ରାଣୀ ପ୍ରତି ତା'ର ନିଷ୍ଠୁରତା ମୁଁ ସହ୍ୟ କରି ପାରିଲି ନାହିଁ । ମୋ ମନରେ କ୍ରୋଧ ଆସିଲା ।" ଏକଥା କହୁ କହୁ ତା' ଆଖିରେ ଲୁହ ଭରିଗଲା । ତା'ପରେ ସେ ତା' ପିଲାବେଳର ଘଟଣା କଥା ଶୁଣାଇ କହିଲା, "ମୁଁ ମୋ ପିଲାବେଳର ପାପ ଯୋଗୁ ଅନେକ

ଭୋଗୁଛି । ସେଇ ପାପର ସଂପୂର୍ଣ୍ଣ କ୍ଷାଳନ ପାଇଁ ମୁଁ ଏବେ ଚାହେଁ କୁକୁରଛୁଆଟିକୁ ଯତ୍ନରେ ପାଳିବି । ତେବେ ଯାଇ ମୋତେ କିଛି ସୁଖ ଶାନ୍ତି ମିଳିବ ।"

ନଟବରର କଥାରେ ସେଠଜୀ ବହୁତ ପ୍ରଭାବିତ ହୋଇ ତାକୁ ଶହେ ଟଙ୍କା ଦେଇ କହିଲେ, "ଠିକ୍ ଅଛି । ତୁ କୁକୁରଛୁଆକୁ ଯତ୍ନରେ ପାଳିବୁ; ଆଉ ଯଦି କେବେ ତୋ ସହିତ ଲଗାଏ ତ ତେବେ ମୋତେ କହିବୁ ।"

ସେଠଜୀ ନଟକୁ ନ ମାରି ଅଧିକନ୍ତୁ ପୁରସ୍କାର ଦେବାରୁ ତାଙ୍କ ସ୍ତ୍ରୀ ଏଥିରେ ଆଶ୍ଚର୍ଯ୍ୟ ହେଲେ । ସେ ସେଠଙ୍କୁ କହିଲେ, "ନିଜ ପିଲାକୁ ମାରିଥିବା ଚାକରକୁ ଆପଣ ପୁରସ୍କାର ଦେବାଟା କିଭଳି ନ୍ୟାଯ୍ୟ ହେଲା ?"

"ହଁ, ମୁଁ ଯାହା କରୁଛି ନ୍ୟାଯ୍ୟ କରୁଛି । ନଟ ପିଲାବେଳେ ଶେଖର ପରି ଚଗଲା ଥିଲା । ଏବେ ସେଥିପାଇଁ ନଟବର ଭୋଗୁଛି, ଶେଖରର କୁକାର୍ଯ୍ୟ ପାଇଁ ତାକୁ ମଧ୍ୟ ଭବିଷ୍ୟତରେ ଫଳ ଭୋଗିବାକୁ ପଡ଼ିବ । ତେଣୁ ନଟ ଯାହା କରୁଛି ତଦ୍ୱାରା ଖାଲି କୁକୁରଛୁଆକୁ ରକ୍ଷା କରୁନାହିଁ ଆହୁରି ମଧ୍ୟ ଶେଖରକୁ ରକ୍ଷା କରୁଛି । ତେଣୁ ତା'ର ପୁଣ୍ୟ କାର୍ଯ୍ୟ ପାଇଁ ତାକୁ ମୁଁ ପୁରସ୍କାର ଦେଲି ।" ସେଠଜୀ ଶାନ୍ତ ଭାବରେ କହିଲେ ।

ସେ ଛୁଆଟିକୁ ପାଳିବା ପରେ ନଟ ଜୀବନରେ ପରିବର୍ତ୍ତନ ଆସିଲା । ତା' ପରେ ତା' ଗ୍ରାମରେ ବର୍ଷା ହେଲା; ଜମିରେ ଫସଲ ହେଲା । ସେ ଗାଁକୁ ଫେରି ଆସିଲା । କ୍ରମେ ତା'ର ସଦ୍‌ଗୁଣ ସବୁ ପ୍ରକାଶ ପାଇବାକୁ ଲାଗିଲା । ତା'ର ଗୁଣରେ ପ୍ରଭାବିତ ହୋଇ ଜଣେ ଧନୀ ଚାଷୀ ତା'ର ଏକମାତ୍ର ଝିଅକୁ ନଟ ସହିତ ବିବାହ ଦେଲା । ତା' ପରଠାରୁ ନଟର ପଶୁପକ୍ଷୀଙ୍କ ପ୍ରତି ସ୍ନେହ ଆହୁରି ବଢ଼ିଗଲା । ସେ ସୁଖପୂର୍ବକ ନିଜର ଜୀବନ ବିତାଇଲା ।





# ଠକ ସହିତ ଠକାମି

ଗୋବିନ୍ଦପୁରରେ ରଘୁ ସାହୁ ନାମରେ ଜଣେ ଧନୀ ବଣିଆ ଥାଏ; ସେ ସମସ୍ତଙ୍କୁ ବହୁତ ସୁଧରେ କରଜ ଦେଉଥାଏ । ସେଇ ଗାଁରେ ରାମପ୍ରସାଦ ନାମରେ ଗରିବ ଗୃହୀଟିଏ ଥାଏ । ଦିନେ ଅତି ବିପଦରେ ପଡ଼ି ସେ ରଘୁ ସାହୁ ପାଖକୁ ଗଲା ଓ କହିଲା, "ରଘୁଭାଇ, ମତେ ପଚିଶଟି ଟଙ୍କା ଧାର ଦିଅ । ମୁଁ ସପ୍ତାହଟିଏ ପରେ ଶୁଝିଦେବି ।"

ରଘୁ ଥିଲା ବଡ଼ କଞ୍ଜୁସ୍ । ପୁଣି ଜାଣିଥିଲା ରାମପ୍ରସାଦର ଅବସ୍ଥା ସେପରି ସ୍ୱଚ୍ଛଳ ନୁହେଁ । ସେ ସୁଧ କ'ଣ ଦେବ, ମୂଳ ମଧ୍ୟ ବୁଡ଼ିଯିବାର ସମ୍ଭାବନା ଅଛି । ତେଣୁ ସେ ଦୋଦୋପାଞ୍ଚ ହୋଇ କହିଲା, "ତମେ ତ ପ୍ରଥମଥର ପାଇଁ ଆସିଛ ! ଆଜି ମୋ ହାତରେ ପଇସାଟାଏ ସୁଦ୍ଧା ନାହିଁ । ନହେଲେ ତୁମକୁ ଖାଲି ହାତରେ ଫେରାଇ ଦେଇ ନଥା'ନ୍ତି ।"

ରାମର ଖୁବ୍ ଦୁଃଖ ହେଲା ଯେ ରଘୁ ମାତ୍ର ପଚିଶଟି ଟଙ୍କା ପାଇଁ ତା' ଉପରେ ବିଶ୍ୱାସ ରଖି ପାରିଲା ନାହିଁ ! କ୍ରମେ ତା'ର ଦୁଃଖ କ୍ରୋଧରେ ପରିଣତ ହେଲା ଓ ସେ ମନେ ମନେ ସ୍ଥିର କଲା ଯେ କୌଣସି ମତେ ସେ ରଘୁ ସାହୁଠାରୁ ଟଙ୍କା ନେବ । ଶେଷକୁ ସେ ମନେ ମନେ ଏକ ଉପାୟ ସ୍ଥିର କଲା ।

ଦିନେ ରଘୁ ସାହୁ ନିଜ ଦୋକାନରେ ଏକା ବସିଥିଲା । ରାମପ୍ରସାଦ ଦୌଡ଼ି ଦୌଡ଼ି ଯାଇ ସେଠି ପହଞ୍ଚି କହିଲା, "ରଘୁଭାଇ, ଟିକିଏ କୁହତ ପାଞ୍ଚରେ ଦଶ ଗୁଣିଲେ କେତେ ହେଉଛି ?" ରଘୁ ଭାବିଲା ରାମ ବୋଧହୁଏ ଅଙ୍କ ଗୁଣନ ଜାଣେ ନାହିଁ ବୋଲି ତାକୁ ପଚାରୁଛି । ତେଣୁ ସେ ହିସାବ କରି କହିଲା, "ପଚାଶ ।"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

"ତୁମର ବୁଦ୍ଧି ଘାସଖିଆ ବୁଦ୍ଧି ନା କ'ଣ? ପଚିଶ ନୁହେଁ ଷାଠିଏ ହେବ।" ରାମ ଉଚ୍ଚ ସ୍ୱରରେ କହିଲା।

"ତୁ ଠାନିହାତି ମୂର୍ଖ। ମୁଁ କହୁଛି ଷାଠିଏ ନୁହେଁ ପଚିଶ।" ରଘୁ ମଧ୍ୟ ଉଚ୍ଚ ସ୍ୱରରେ କହିଲା।

ତା'ପରେ ଦୁହେଁ "ପଚିଶ, ଷାଠିଏ" କହି କହି ପରସ୍ପରକୁ ଦବାଇବାକୁ ଚେଷ୍ଟା କଲେ। ଲୋକ ଜମିଗଲେ।

ବହୁତ ଲୋକ ଦେଖି ରାମ ଲୋକମାନଙ୍କୁ ସମ୍ବୋଧନ କରି କହିଲା, "ଭାଇମାନେ, ମୋର ନ୍ୟାୟ କରିଦିଅନ୍ତୁ। ଏ କଞ୍ଜୁସ୍ ରଘୁ ସାହୁ ମୋର ଦଶଟଙ୍କା ଠକି ନେବାକୁ ଚାହେଁ। ମୁଁ ତା ପାଖରେ ଷାଠିଏ ଟଙ୍କା ଜମା ରଖିଥିଲି ଏବେ କହୁଛି କ'ଣ ପଚିଶ ଟଙ୍କା। ଆପଣମାନେ ଏ କଥା ଟିକେ ବିଚାର କରି ମୋର ଷାଠିଏ ଟଙ୍କା ଦିଆଇ ଦିଅନ୍ତୁ।"

ରାମପ୍ରସାଦର ଏ ଆକ୍ଷେପ ଶୁଣି ରଘୁ ସାହୁ ମୁହଁ ଫିକା ପଡିଗଲା। ସେ ଚିତ୍କାର କରି କହିଲା, "କି ବଦମାସ୍ ଏ ରାମ। ତୁ କେବେ ମୋ ପାଖରେ ପଇସା ଜମା କରିଛୁ?" ପୁଣି ଲୋକମାନଙ୍କୁ ଚାହିଁ କହିଲା, "ଭାଇମାନେ, ଏ ଖାଲି ମିଛ କଥା କହି ଠକୁଛି। ମୋଠାରେ ତା'ର କୌଣସି ଟଙ୍କା ଜମା ନାହିଁ।"

ରାମପ୍ରସାଦ ମଧ୍ୟ ରଘୁର କଥା କାଟିବାକୁ ଯାଇ କହିଲା, "ତୁମର ନାଟକୀୟ କଥା ବନ୍ଦ କର ରଘୁଜୀ; ଏ ଗାଁରେ କିଏ ଜାଣେନାହିଁ ଯେ ତମେ ଅନ୍ୟମାନଙ୍କ ପଇସା ମାରି ବଡ଼ଲୋକ ହୋଇଛ? ପଚିଶ ବୋଲି ତ କହୁଥିଲ ଟିକିଏ



ଆଗରୁ; ପୁଣି ଏବେ ସେତକ ବି ମାନୁ ନାହିଁ? ତମେ ମତେ ବେଶ୍ ଶିକ୍ଷା ଦେଇଛ । ମୁଁ ଏବେ ଭୁଲରେ ସୁଦ୍ଧା ତୁମ ପାଖରେ ପଇସା ଜମା ଦେବି ନାହିଁ ।"

ରାମପ୍ରସାଦ ଏପରି କୌଶଳର ସହିତ କହିଲା ଯେମିତି ଜଣାଯିବ ସେ ସତରେ ପଇସା ଜମା କରିଥିଲା । ସମସ୍ତେ ତା' କଥା ବିଶ୍ୱାସ କଲେ । ତେଣୁ ସମସ୍ତେ ଏକାଠି ହୋଇ ରଘୁ ସାହୁକୁ ଗାଳିଦେଇ କହିଲେ, "ପ୍ରଥମେ ତ ତମେ ପଚାଶ ଦେବାକୁ ପ୍ରସ୍ତୁତ ଥିଲ । ଏକଥା ତ ଆମେ ନିଜ କାନରେ ଶୁଣିଛୁ । ଆଉ ସେତକ ମଧ୍ୟ ତମେ ଆମମାନଙ୍କ ସାମନାରେ ସମ୍ପୂର୍ଣ୍ଣ ଉଡ଼େଇ ଦେବାକୁ ବସିଛ? ତମେ ଏପରି ଅବିଶ୍ୱାସୀ କାମ କିପରି କରୁଛ? ଏବେ ତ ରାମପ୍ରସାଦ ପଚାଶ ପାଇଁ ମଧ୍ୟ ରାଜି । ତେଣୁ ତାକୁ ଅନ୍ତତଃ ସେତକ ଦେଇଦିଅ ।"

କିଛି ସମୟ ଏପରି ବିବାଦ ଲାଗିଲେ ହୁଏତ ଷାଠିଏ ଟଙ୍କା ମଧ୍ୟ ଦେବାକୁ ପଡ଼ିବ ଭାବି ରଘୁ ଶୀଘ୍ର ପଚାଶ ଟଙ୍କା କାଢ଼ି ରାମକୁ ଦେଇଦେଲା ।

ହାତରେ ଟଙ୍କା ପାଇବାମାତ୍ରେହିଁ ରାମ ଜୋର୍‌ରେ ହସି ଉଠିଲା । ତା'ପରେ ଲୋକମାନଙ୍କୁ ଅନାଇ କହିଲା, "ଏପରି ପ୍ରକୃତରେ ମୁଁ କରିଛି ତାକୁ ଶିକ୍ଷା ଦେବାକୁ ।" ତା'ପରେ ପଚିଶ ଟଙ୍କା ରଘୁକୁ ଫେରାଇ ଦେଇ ସେ କହିଲା, "ନିଅ ତୁମ ପଚିଶ ଟଙ୍କା । ବାକି ପଚିଶ୍ ମୁଁ ପରେ ଦେବି କାରଣ ମୋର ଟଙ୍କାର ଦରକାର ଅଛି । ମୁଁ ତୁମକୁ କହିବାକୁ ଚାହୁଁଥିଲି ଯେ ଟଙ୍କା ଯାହାର ଥାଏ ସେ ଯଦି ଅନ୍ୟକୁ ସାହାଯ୍ୟ ନକରେ ତେବେ ଟଙ୍କା ରଖିବାର ମାନେ କ'ଣ? ମୁଁ ଚାହିଁଲେ ସବୁ ଟଙ୍କା ରଖି ପାରିଥା'ନ୍ତି । କିନ୍ତୁ ମୁଁ ଗରିବ ହେଲେ ମଧ୍ୟ ଠକ ନୁହେଁ । ମୁଁ ଠିକ୍ ସମୟରେ ସୁଧ ସହିତ ଫେରାଇ ଦେବି ।"

ରଘୁ ସାହୁ ଲଜ୍ଜାରେ ମୁଣ୍ଡ ତଳକୁ କଲେ । ଲୋକମାନେ ସବୁକଥା ଶୁଣି ହସି ହସି ସେଠାରୁ ପ୍ରସ୍ଥାନ କଲେ ।






# ବିଷ୍ଣୁ ପୁରାଣ

ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥକୁ ନେଇ ଦୁଇସେନା ମଝିରେ ରଖିଲେ । ଦୁଇପକ୍ଷର ସୈନ୍ୟଙ୍କୁ ଦେଖି ଅର୍ଜୁନଙ୍କ ମନ ବିଷାଦରେ ପୂର୍ଣ୍ଣ ହେଲା । ଶତ୍ରୁପକ୍ଷରେ ଯେଉଁମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ସେମାନଙ୍କ ମଧ୍ୟରେ ଥିଲେ ତାଙ୍କର ଗୁରୁଜନ, ବନ୍ଧୁଜନ, ଭାଇମାନେ ଓ ଅନ୍ୟାନ୍ୟ ଆତ୍ମୀୟମାନେ । ଅର୍ଜୁନଙ୍କ ହସ୍ତ ଶିଥିଳ ହୋଇ ସେଥିରୁ ଧନୁ ଖସି ପଡ଼ିଲା ଓ ସେ ଦୁଃଖରେ କହିଲେ, "ଏମାନଙ୍କୁ ମାରି ଯେଉଁ ରାଜ୍ୟ ଲାଭ ହେବ ସେଥିରେ ଆମର ପ୍ରୟୋଜନ ନାହିଁ । ଯେଉଁମାନେ ଆମର ବନ୍ଧୁ, ଆତ୍ମୀୟ ଓ ସୁହୃଦ ସେମାନଙ୍କୁ ସାମାନ୍ୟ ରାଜ୍ୟ ପାଇଁ ହତ୍ୟା କରି ନରକଗାମୀ ହେବାକୁ ମୁଁ ଚାହେଁନାହିଁ । ମୁଁ ଯୁଦ୍ଧ କରିବି ନାହିଁ ।" ଏତିକି କହି ଅର୍ଜୁନ ତୀବ୍ର ବିଷାଦ ଭାବରେ ଅସ୍ତ୍ର ତ୍ୟାଗ ପୂର୍ବକ ସେଇଠାରେ ବସି ପଡ଼ିଲେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କର ଏପରି ଅବସ୍ଥା ଦେଖି କହିଲେ, "ହେ ଅର୍ଜୁନ, ଯୁଦ୍ଧ କ୍ଷେତ୍ରରେ ଅସ୍ତ୍ର ଶସ୍ତ୍ର ତ୍ୟାଗ କରି ଏପରି ହତାଶ ହୋଇ ବସି ରହିବା କୌଣସି ବିବେକବାନ୍ କ୍ଷତ୍ରିୟର କାର୍ଯ୍ୟ ନୁହେଁ ; ଭୀରୁ ଓ କାପୁରୁଷମାନେହିଁ ଏପରି କରନ୍ତି । ଦେଶ ଓ କାଳ ଅନୁସାରେ ନିଜର କର୍ତ୍ତବ୍ୟ ପାଳନ କରିବାହିଁ ସବୁଠାରୁ ବଡ଼ ଧର୍ମ । ପ୍ରକୃତରେ ପରମେଶ୍ୱରହିଁ ଏକମାତ୍ର କର୍ତ୍ତା । ଅନ୍ୟାୟ ଓ ଅଧର୍ମକୁ ବଧ କରି ଧର୍ମ ସ୍ଥାପନ କରିବା ହେଲା ତାଙ୍କର କାର୍ଯ୍ୟ । ମନୁଷ୍ୟ କେବଳ ନିମିତ୍ତ ମାତ୍ର । ଯୁଗ



ଯୁଗ ଧରି ଏହି ଧର୍ମ ସଂସ୍ଥାପନ ପାଇଁ ତମେ ଓ ମୁଁ ନରନାରାୟଣ ରୂପେ ଅବତୀର୍ଣ୍ଣ ହୋଇ ଆସୁଛେ । ତମର ଏସବୁ ସ୍ମରଣ ନାହିଁ, ମାତ୍ର ମୋର ସ୍ମରଣ ଅଛି । ତମେ ନିଜର କର୍ତ୍ତବ୍ୟ କର ଓ ଭଗବାନଙ୍କ ଯନ୍ତ୍ର ଭାବରେ ମୋର ଉପଦେଶ ଶ୍ରବଣ କରି ସେହି ଅନୁସାରେ କାର୍ଯ୍ୟ କର । ଏବେ ଉପସ୍ଥିତ କ୍ଷେତ୍ରରେ ତମେ ଅସ୍ତ୍ର ପୁନଶ୍ଚ ଧାରଣ କରି କ୍ଷତ୍ରିୟୋଚିତ କର୍ତ୍ତବ୍ୟ ସ୍ମରଣ କରି ଯୁଦ୍ଧରେ ପ୍ରବୃତ୍ତ ହୁଅ ।"

ଶ୍ରୀକୃଷ୍ଣ ଏତେ କହିବା ପରେ ମଧ୍ୟ ଅର୍ଜୁନଙ୍କ ମନରେ ସନ୍ଦେହ ଥିଲା । ଅର୍ଜୁନଙ୍କୁ ସମ୍ପୂର୍ଣ୍ଣ ଜ୍ଞାନ ଦେବା ପାଇଁ ଶ୍ରୀକୃଷ୍ଣ ତାଙ୍କ ସମକ୍ଷରେ ନିଜର ବିଶ୍ୱରୂପ ପ୍ରକଟ କଲେ । ସେଥିରେ ଅର୍ଜୁନ ଦେଖିଲେ ବିଶ୍ୱବ୍ରହ୍ମାଣ୍ଡ, ତେତିଶକୋଟି ଦେବତା, ସୃଷ୍ଟି, ସ୍ଥିତି, ପ୍ରଳୟ । ସେଥିରେ ସେ ଦେଖିଲେ ଶ୍ରୀକୃଷ୍ଣଙ୍କୁ ମହାକାଳ ରୂପେ— ଯେଉଁଥିରେ ସବୁ କିଛି ଅବଶେଷରେ ବିଲୟ ହୋଇ ଯାଉଛି ।

ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ଦେଖି ଅର୍ଜୁନ ଅବତାରଙ୍କ କାର୍ଯ୍ୟର ଗୁରୁତ୍ୱ ଉପଲବ୍‌ଧି କଲେ । ତା'ପରେ ସେ ଦୃଢ଼ ଭାବରେ କେବଳ ଗୋଟିଏ କଥା ସ୍ମରଣ ରଖିଲେ ଯେ "ଶ୍ରୀକୃଷ୍ଣ ଜଗତର ପ୍ରଭୁ, ସେ ଯାହା କହିବେ ମୁଁ କରିବି, ମୁଁ ତାଙ୍କର ହାତରେ ଯନ୍ତ୍ର ମାତ୍ର ।"

ସେ ହୃଦୟଙ୍ଗମ କଲେ ଯେ କ'ଣ ଠିକ୍ କ'ଣ ଭୁଲ ଏସବୁ ନିର୍ଣ୍ଣୟ କରିବା ମଣିଷର ମନ ପକ୍ଷରେ ସହଜ ନୁହେଁ । ପୃଥିବୀରେ ନାନା ପ୍ରକାର ନୀତି ନିୟମ ରହିଛି । ଗୋଟିଏ ନୀତି ପାଳନ କରିବାକୁ ଯାଇ ଜଣେ ଅନ୍ୟ ଏକ ନୀତି ଲଙ୍ଘନ କରିବା ଅସମ୍ଭବ ନୁହେଁ । କିନ୍ତୁ ଭଗବାନ ସ୍ୱୟଂ ହେଲେ ସବୁ ନୀତି ଓ ସବୁ ଧର୍ମର ଊର୍ଦ୍ଧ୍ୱରେ ଥିବା ଏକମାତ୍ର ସତ୍ୟ । ତାଙ୍କ ପ୍ରେରଣାରେ କାର୍ଯ୍ୟ କରିବାର ସୁଯୋଗଠୁଁ ବଳି ସୌଭାଗ୍ୟ ଆଉ କ'ଣ ଥାଇପାରେ? ଶ୍ରୀକୃଷ୍ଣଙ୍କୁ ସଖା ତଥା ଦିଗ୍‌ଦର୍ଶକ ରୂପେ ପାଇଥିବାରୁ ଅର୍ଜୁନ ନିଜକୁ ଧନ୍ୟ ମନେ କଲେ ଓ ତାଙ୍କୁ ପ୍ରଣାମ କଲେ ।

ଏହି ଭାବ ମନ ଭିତରେ ଉଦୟ ହେବା ମାତ୍ରେ ଅର୍ଜୁନଙ୍କ ମନରେ ଯଥେଷ୍ଟ ବଳ

ଆସିଲା ଓ ସେ ତତ୍‌କ୍ଷଣାତ୍ ନିଜର ପରିଚ୍ଛଦ ଧନୁ ଓ ଅସ୍ତ୍ରଶସ୍ତ୍ର ଧାରଣ ପୂର୍ବକ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଲେ । ଏହି ସୁଯୋଗରେ ଶ୍ରୀକୃଷ୍ଣ ଯୁଦ୍ଧାରମ୍ଭର ସୂଚନା ଦେବାକୁ ଯାଇଁ ନିଜର ପାଞ୍ଚଜନ୍ୟ ଶଙ୍ଖ ବଜାଇଲେ । ତା'ପରେ ପରେ ଦୁଇ ପକ୍ଷରୁ ଶତ ଶତ ଶଙ୍ଖ ବାଜି ଉଠିଲା ଓ ଯୁଦ୍ଧ ଆରମ୍ଭ ହେଲା ।

ଦିନ ପରେ ଦିନ ଏଇପରି ଅଠର ଦିନ ଯୁଦ୍ଧ ଲାଗି ରହିଲା । ମାତ୍ର ଅବଶେଷରେ ଶ୍ରୀକୃଷ୍ଣଙ୍କ ସହାୟତାରେ ପାଣ୍ଡବଦଳ ବିଜୟ ଲାଭ କଲେ ।



ଶାନ୍ତିଦୂତ ରୂପରେ ଶ୍ରୀକୃଷ୍ଣଙ୍କ ଭବିଷ୍ୟତ୍-ବାଣୀର ସତ୍ୟତା ପ୍ରମାଣିତ ହେଲା । ଭୀମ ନିଜର ପ୍ରତିଜ୍ଞା ପାଳନ କରିବାକୁ ଯାଇ ଦୁଃଶାସନ ରକ୍ତରେ ଦ୍ରୌପଦୀଙ୍କର ବେଣୀ-ବନ୍ଧନ କଲେ । ଅଭିମନ୍ୟୁ ଯୁଦ୍ଧରେ ବୀରଗତି ପ୍ରାପ୍ତ ହେଲେ । କର୍ଣ୍ଣ ମଧ୍ୟ ନିଜର ସ୍ୱରୂପ ପ୍ରାପ୍ତ ହୋଇ ଶିବଙ୍କ ସହ ଲୀନ ହୋଇଗଲେ । ପୃଥିବୀମାତାଙ୍କୁ ବିଷ୍ଣୁ ଦେଇଥିବା କଥା ଅନୁସାରେ ପାପଭାର ଲାଘବ ହେଲା ।

ଯୁଦ୍ଧ ପରେ ଦୁର୍ଯ୍ୟୋଧନର ମୃତ୍ୟୁ ଯୋଗୁ ଧୃତରାଷ୍ଟ୍ରଙ୍କ ହୃଦୟ ଦୁଃଖ ଓ ରାଗରେ ଜର୍ଜରିତ ହେଲା । ପ୍ରତିଶୋଧ ପରାୟଣ ଅନ୍ଧ ରାଜା ଛଳନା କରି ଭୀମ ସହିତ ମିଳିତ ହେବାକୁ ଚାହିଁଲେ । ଶ୍ରୀକୃଷ୍ଣ ତାଙ୍କର ଦୁରଭିସନ୍ଧି ବୁଝିପାରି ଭୀମ ବଦଳରେ ଏକ ଲୌହଭୀମକୁ ତାଙ୍କ ହାତରେ ଦେଲେ । ଧୃତରାଷ୍ଟ୍ର ତାକୁ ଆଲିଙ୍ଗନ କରି ମୁହୂର୍ତ୍ତକରେ ଚୂର୍ଣ୍ଣବିଚୂର୍ଣ୍ଣ କରି ଧୂଳିସାତ୍ କଲେ । ଗାନ୍ଧାରୀ ପୁତ୍ରଶୋକରେ ବ୍ୟାକୁଳ ହୋଇ ଶ୍ରୀକୃଷ୍ଣଙ୍କୁ ଅଭିଶାପ ଦେଲେ, "ହେ କୃଷ୍ଣ, କୌରବମାନଙ୍କ ପରି ତୁମ ଯାଦବବଂଶ ମଧ୍ୟ ଧ୍ୱଂସ ହେବ ।"

ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ଦେବୀ, ଆପଣ ମହାସତୀ, ଆପଣଙ୍କ କଥା କଦାପି ମିଥ୍ୟା ହେବ ନାହିଁ, ନିୟତିର ନିର୍ଣ୍ଣୟହିଁ ଆପଣଙ୍କ ମୁଖରେ ପ୍ରକାଶ ପାଇଲା, ତାହାହିଁ ହେବ ।"

ସୁପ୍ତ ଅବସ୍ଥାରେ ଦ୍ରୌପଦୀଙ୍କର ପାଞ୍ଚପୁତ୍ରଙ୍କୁ ଅଶ୍ୱତ୍ଥାମା ହତ୍ୟା କଲା । ସେଇ ଘଟଣାର



ପ୍ରତିଶୋଧ ନେବା ପାଇଁ କୃଷ୍ଣ ଓ ଅର୍ଜୁନ ଅଶ୍ୱତ୍ଥାମାକୁ ବାନ୍ଧି ଦ୍ରୌପଦୀଙ୍କ ସମ୍ମୁଖରେ ହାଜର କରାଇଲେ । କିନ୍ତୁ ଦ୍ରୌପଦୀ ଅଶ୍ୱତ୍ଥାମାଙ୍କୁ ମୁକ୍ତ ଦେଲେ ଓ କହିଲେ, "ତୁମ ପାଇଁ ଉଚିତ୍ ଦଣ୍ଡ ହେଉଛି ଶାଶ୍ୱତ ନାରକୀୟ ଜୀବନ । ମୃତ୍ୟୁ ହେଲେ ତ ତମେ ସେଥିରୁ ମୁକ୍ତ ହେବ । ତେଣୁ ମୃତ୍ୟୁ ମଧ୍ୟ ତୁମ ନିକଟକୁ ଆସିବ ନାହିଁ ।"

ଶ୍ରୀକୃଷ୍ଣଙ୍କ ଆଦେଶ ଅନୁସାରେ ଅର୍ଜୁନ ଅଶ୍ୱତ୍ଥାମାର ଶିରସ୍ଥାନରୁ ମଣି ନେଇ ତାକୁ ଛାଡ଼ି ଦେଲେ । ମଣିହୀନ ହେବାରୁ ସେ ମାନସିକ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଚାରିଆଡ଼େ ଘୁରି ବୁଲିଲା ।

ଅଶ୍ୱତ୍ଥାମା ପାଣ୍ଡବଙ୍କୁ ନିର୍ବଂଶ କରିବା ପାଇଁ ତାଙ୍କ ବଂଶର ଶେଷ ଆଶା ଉତ୍ତରାଙ୍କ ଗର୍ଭସ୍ଥିତ ଶିଶୁକୁ ମାରିବା ପାଇଁ ବ୍ରହ୍ମ ଅସ୍ତ୍ର ପ୍ରୟୋଗ କରିଥିଲା । ତେଣୁ ପିଲାଟି ପେଟରୁ ମରି ଜନ୍ମ ନେଲା । ଏଥିରେ ପାଣ୍ଡବକୁଳର ସମସ୍ତେ ମର୍ମାହତ ହେଲେ । ଅବଶେଷରେ ଶ୍ରୀକୃଷ୍ଣ ଆସି ପରୀକ୍ଷା କରି ଦେଖିଲେ ଯେ ତା' ଭିତରେ ଅଳ୍ପ ଜୀବନ ଅଛି । ତେଣୁ ସେ ପାଦସ୍ପର୍ଶ କରି ତାକୁ ସୁସ୍ଥ ଜୀବନ ଦାନ କଲେ । ସେଥିପାଇ ତା'ର ନାମ ହେଲା ପରୀକ୍ଷିତ ।

ଶରଶଯ୍ୟା ଉପରେ ଶୋଇ ରହି ବୃଦ୍ଧ ଭୀଷ୍ମ ସୂର୍ଯ୍ୟଙ୍କ ଉତ୍ତରାୟଣ ଗତି ପାଇଁ ଅପେକ୍ଷା କରୁଥିଲେ । ସେହିଠାରେ ଥାଇ ସେ ଯୁଧିଷ୍ଠିରଙ୍କୁ ରାଜଧର୍ମର ଉପଦେଶ ଦେଲେ । ସମୟ ଅନୁସାରେ ସେ ଦେହ ତ୍ୟାଗ କରି ସ୍ୱର୍ଗଗମନ କଲେ ।

ଯୁଧିଷ୍ଠିରଙ୍କର ରାଜ୍ୟାଭିଷେକ ହେଲା । ତା' ସହିତ ଅଶ୍ୱମେଧ ଯଜ୍ଞ ପାଇଁ ସବୁ ପ୍ରକାର ପ୍ରସ୍ତୁତ ଚାଲିଥାଏ, ଯେତେବେଳେ ଶ୍ରୀକୃଷ୍ଣ ଓ ଅନ୍ୟ ଯାଦବବୀରମାନେ ଯୁଦ୍ଧ ପାଇଁ କୁରୁକ୍ଷେତ୍ରରେ ଥିଲେ ସେତେବେଳେ ଅନ୍ୟାନ୍ୟ ଯଦୁବଂଶୀ ଯୁବକମାନେ ଅତ୍ୟନ୍ତ ଉଦ୍ଧତ ଓ ଗର୍ବୀ ହୋଇ ଉଠିଲେ । ବଳରାମ ଯୁଦ୍ଧ ପୂର୍ବରୁହିଁ ତୀର୍ଥାଟନରେ ବାହାରି ଯାଇଥିଲେ ।



ଥରେ ଦ୍ୱାରକାକୁ କେତେକ ଋଷିମୁନି ବୁଲି ଆସିଥାନ୍ତି । ମୂର୍ଖ ଯାଦବମାନେ ଶ୍ରୀକୃଷ୍ଣ ପୁଅ ଶାମ୍ବକୁ ସ୍ତ୍ରୀ ବେଶ କରାଇ ମଜା କରିବା ପାଇଁ ଋଷିମାନଙ୍କୁ ପଚାରିଲେ, "କୁହନ୍ତୁ ଦେଖି ଏହା ପେଟରେ ଯେଉଁ ପିଲା ଅଛି ସେ ଝିଅ ନା ପୁଅ ।"

ଏପରି ଅଶାଳୀନ ବ୍ୟବହାରରେ କ୍ଷୁବ୍ଧ ହୋଇ ଋଷିମାନେ ଅଭିଶାପ ଦେଲେ ଯେ ଏହା ପେଟରେ ଯିଏ ଅଛି ତା'ର ଦ୍ୱାରା ଯଦୁ ବଂଶ ଧ୍ୱଂସ ହେବ ।

ପ୍ରକୃତରେ ତା' ଲୁଗା ଭିତରୁ ଏକ ଲୌହମୂଷଳ ବାହାରିଲା ଓ ସମସ୍ତେ ଡ଼ରିଗଲେ । ପରେ ଶ୍ରୀକୃଷ୍ଣ ଓ ବଳରାମ ଫେରିବା ପରେ ସେମାନେ ବି ଏକଥା ଜାଣିଲେ । ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ଭୀମ ଲୌହମୂଷଳଟିକୁ ଘଷି ଘଷି ସମୁଦ୍ରରେ ପକାଇଲା । ଶେଷରେ ବଳିଥିବା ଛୋଟ ଖଣ୍ଡେ ଲୁହାକୁ ସମୁଦ୍ରରେ ଥିବା ମାଛଟିଏ ଗିଳି ଦେଲା । ପରେ ଜଣେ ଶବରର ଜାଲରେ ମାଛଟି ପଡ଼ିଲା । ମାଛଟିକୁ କାଟି ଏଡ଼େ ସୁନ୍ଦର ଲୁହା ଖଣ୍ଡେ ପାଇ ତାକୁ ସେ ତା'ର ତୀରରେ ଲଗାଇଲା ।

କିଛିଦିନ ପରେ ଥରେ ଯଦୁବଂଶୀମାନେ କୌଣସି ଏକ ଉତ୍ସବରେ ଆମୋଦ ପ୍ରମୋଦ କରିବାବେଳେ ବହୁତ କାଦମ୍ବରୀ ରସ ପାନ-କରି ନିଜର ଜ୍ଞାନ ହରାଇ ପରସ୍ପର ମଧ୍ୟରେ ମାଡ଼ଗୋଳ ହୋଇ ମରିଗଲେ ।

ଏସବୁ ଶୁଣି ବଳରାମ ବିରକ୍ତ ହୋଇ ନିଜେ ଜଙ୍ଗଲକୁ ଚାଲିଯାଇ ସମାଧି ଅବସ୍ଥାରେ ଶରୀର ତ୍ୟାଗ କଲେ ଓ ଶେଷନାଗ ରୂପେ ନିଜର ସ୍ୱରୂପ ପ୍ରାପ୍ତ ହୋଇ ବୈକୁଣ୍ଠ ଗମନ କଲେ ।

ଶ୍ରୀକୃଷ୍ଣ ଦ୍ୱାରକା ନଗରୀର କିଛି ଅଂଶ ସମୁଦ୍ରଠାରୁ ମାଗି ନେଇଥିଲେ । ସେଇ କେତେକ ଭୂମିକୁ ତାଙ୍କୁ ସମୁଦ୍ରକୁ ଫେରାଇବା କଥା ଥିଲା । ତେଣୁ ସେ ଅର୍ଜୁନଙ୍କୁ ଡାକି କହିଲେ, "ଏବେ ତମେ ସ୍ତ୍ରୀ, ପିଲା, ବୁଢ଼ା ଓ ଅନ୍ୟମାନଙ୍କୁ ଇନ୍ଦ୍ରପ୍ରସ୍ଥ ନେଇଯାଅ । କାରଣ ମୋ କଥା ଅନୁସାରେ ଏବେ ସମୁଦ୍ର ପୁଣି ମାଡ଼ି ଆସିବ ।"



ତା'ପରେ ଶ୍ରୀକୃଷ୍ଣ ତାଙ୍କର ପ୍ରିୟ ଭକ୍ତ ଉଦ୍ଧବଙ୍କୁ ଅନେକ ଉପଦେଶ ଦେଇ ବଦ୍ରିକାଶ୍ରମକୁ ପଠାଇ ଦେଲେ। ତାଙ୍କର ଅବତାର ହେବାର ସମସ୍ତ କାର୍ଯ୍ୟ ସଂପନ୍ନ ହେଲା।

ଅବଶେଷରେ ସେ ସମୁଦ୍ର ତଟସ୍ଥିତ ବନ ମଧ୍ୟରେ ପ୍ରବେଶ କରି ଦିବ୍ୟ ବେଣୁବାଦନ କଲେ। ତାଙ୍କ ବଂଶୀ ମଧ୍ୟରେ ସେ ରାଗ ହିନ୍ଦୋଳ, ଯମୁନାକଲ୍ୟାଣୀ ଓ ଦେବଗାନ୍ଧାର ରାଗମାନ ବଜାଇଲେ। ସମଗ୍ର ପ୍ରକୃତି ପୁଲକିତ ହୋଇ ଉଠିଲା। ସମୁଦ୍ରର ଜଳ ଶାନ୍ତ ହେଲା। ସେ କ୍ଲାନ୍ତ ହୋଇ ଗୋଟିଏ ଗଛକୁ ଆଉଜି ବସିଥା'ନ୍ତି। ସବୁଜ ଘାସ ଭିତରେ ତାଙ୍କ ପାଦ ପ୍ରସାରିତ ହୋଇଥାଏ।

ପୂର୍ବୋକ୍ତ ବ୍ୟାଧଟି ଦୂରରୁ କୃଷ୍ଣଙ୍କୁ ଦେଖି ପାରିନି, କେବଳ ତାଙ୍କର କୋମଳ ଗୋଲାପି ରଙ୍ଗର ପାଦଟିଏ ଘାସ ଭିତରେ ଦେଖି ହରିଣ କାନର ଭ୍ରମ କରି ତୀର ମାରିଲା। ସେଇ ତୀରରେ ଥିଲା ସେହି ଅଭିଶପ୍ତ ମୂଷଳର ଶେଷାଂଶ।

ତୀର ମାରିବା ପରେ ଶିକାର ସଂଗ୍ରହ କରିବା ପାଇଁ ବ୍ୟାଧ ଆସି ପହଞ୍ଚିଲା ଓ ଶ୍ରୀକୃଷ୍ଣଙ୍କର ଏ ଦଶା ଦେଖି ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲା। କିନ୍ତୁ ଦୟାସାଗର ଶ୍ରୀକୃଷ୍ଣ ତାକୁ ସାନ୍ତ୍ୱନା ଦେଇ ବୁଝାଇ କହିଲେ, "ମୋର ଏ ଅବସ୍ଥା ପାଇଁ ତୁମେ ଦୁଃଖ କରନାହିଁ। ରାମ ଅବତାରରେ ମୁଁ ଗଛ ଉହାଡ଼ରେ ଥାଇ ବାଳୀକୁ ମାରିଥିଲି। ତମେ ସେତେବେଳେ ବାଳୀର ପୁଅ ଅଙ୍ଗଦ ଥିଲ। ତମ ମନ ଭିତରେ ଯେଉଁ ପ୍ରତିଶୋଧ ନେବାର ଇଚ୍ଛା କ୍ଷଣକ ପାଇଁ ହୋଇଥିଲା ତାହାହିଁ ଆଜି କାର୍ଯ୍ୟକାରୀ ହୋଇଛି। ତେଣୁ ତମେ କିଛି ଚିନ୍ତା କରନାହିଁ।" ଏକଥା କହି ଶ୍ରୀକୃଷ୍ଣ ବ୍ୟାଧକୁ ଦିବ୍ୟଚକ୍ଷୁ ଦାନ କରି ନିଜର ରାମାବତାରର ଘଟଣା ସବୁ ଦେଖାଇଲେ। ରାମଙ୍କର ଦର୍ଶନ ହେବାମାତ୍ରେ ବ୍ୟାଧ ପୂର୍ବଜନ୍ମର ସମସ୍ତ ଘଟଣା ସ୍ମରଣ କରିପାରିଲା।

ତା'ପରେ ଶ୍ରୀକୃଷ୍ଣଙ୍କ ସାରଥୀ ତାଙ୍କୁ ଖୋଜି ଖୋଜି ଆସି ସେଠାରେ ପହଞ୍ଚିଲା। ଶ୍ରୀକୃଷ୍ଣ

ସେଇ ଅବସ୍ଥାରେ ଥାଇ ଯାହା ପାଇଁ ଯେପରି ସମ୍ବାଦ ଦେବାର ଥିଲା ବା ବ୍ୟବସ୍ଥା କରିବାର ଥିଲା ସେସବୁ ସାରଥିଙ୍କୁ ନିର୍ଦ୍ଦେଶ ଦେଲେ । ସମସ୍ତ କଥା ନିର୍ଦ୍ଦେଶ ଦେବା ପରେ ସେ ସାରଥିଙ୍କୁ ବିଦାୟ ଦେଲେ । ତା'ପରେ ସେ ତାଙ୍କର ପାର୍ଥିବ ଲୀଳା ସମାପ୍ତ କରି ବିଷ୍ଣୁଙ୍କ ଦିବ୍ୟ ରୂପ ଧରି ବୈକୁଣ୍ଠ ଗମନ କଲେ ।

ଶ୍ରୀକୃଷ୍ଣଙ୍କ ଶରୀର ତ୍ୟାଗ ପରେ ସମୁଦ୍ର ଦ୍ୱାରା ଦ୍ୱାରକା ଜଳମଗ୍ନ ହେଲା । ତା'ପରେ ଗୋଟିଏ ଯୁଗର ଅବସାନ ହେଲା ଓ କଳିଯୁଗ ଆରମ୍ଭ ହେଲା ।

ଗୀତାରେ ଶ୍ରୀକୃଷ୍ଣ ଯାହା କହିଛନ୍ତି ସେହି ଅନୁସାରେ ତାଙ୍କର ସମସ୍ତ କାର୍ଯ୍ୟ ଅବତାର ଭାବରେ ସେ ସୁସମ୍ପନ୍ନ କରିଥିଲେ । ଯେତେବେଳେ ଅସୁର ଶକ୍ତିର ପ୍ରାବଲ୍ୟ ଯୋଗୁ ଧର୍ମର ଗ୍ଲାନି ଘଟିଥିଲା, ସେତେବେଳେ ସେ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇ ଦୁଷ୍ଟମାନଙ୍କୁ ବିନାଶ କରି ସାଧମାନଙ୍କୁ ରକ୍ଷାକରି ଧର୍ମର ସଂସ୍ଥାପନ କରିଥିଲେ । ସେ ଜନ୍ମରୁ ନିଜ ଅବତାର ବିଷୟରେ ସଚେତନ ଥିଲେ ।

ତାଙ୍କ ପରେ କଳିଯୁଗ ପ୍ରବେଶ କଲା । ସେ ଜାଣିଥିଲେ ସେଥିରେ ପାପର ଭାର ପୁଣି ଧୀରେ ଧୀରେ ବଢ଼ିଯିବ । ମନୁଷ୍ୟ ସମାଜକୁ ଭୟଙ୍କର ପାପର କବଳରୁ ମୁକ୍ତ କରିବାକୁ ସେ ଯେଉଁ ଜ୍ଞାନ ଓ ଭକ୍ତିଯୋଗ ଗୀତା ମାଧ୍ୟମରେ ଦେଇଛନ୍ତି ତାହା ଅମୂଲ୍ୟ । ମହର୍ଷି ବ୍ୟାସହିଁ ତାକୁ ରଚନା କରିଥିଲେ । କିନ୍ତୁ ତାହା ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖ ନିଶୃତ ବାଣୀ ଉପରେ ଆଧାରିତ ।

ପ୍ରକୃତରେ ସବୁ ଜ୍ଞାନରେ ଭରା ଗୀତା ବିଷୟରେ ଲେଖା ଅଛି ଉପନିଷଦ ମାନଙ୍କର ଜ୍ଞାନ ସବୁ ହେଲେ ଗାଈ; ଯାହାକୁ ଗୋପାଳ-ନନ୍ଦନ କୃଷ୍ଣ ଦୋହନ କରୁଛନ୍ତି; ପାର୍ଥ ହେଉଛନ୍ତି ବାଛୁରି । ଆଉ ଯେଉଁ ଦୁଗ୍ଧ ଦୋହନ ହେଉଛି ତାହା ଗୀତାର ଅମୃତମୟ ବାଣୀ । ତାକୁ କେବଳ ସୁଧୀ ବା ଜ୍ଞାନୀଗଣହିଁ ପାନ କରି ଧନ୍ୟ ହେବେ ।





# ବିଧାତାର ଦଣ୍ଡ

"ବାସ୍ରାର ରାଜମହଲରେ ଚୋରି !"

ଏ ଖବର ଦେଖୁ ଦେଖୁ କ୍ରମେ ଚାରିଆଡ଼େ ବ୍ୟାପି ଗଲା । ସୁଲତାନ ରାଗରେ ଯେତେବେଳେ ଥରୁଥିଲେ, ସଚିବମାନେ ସେତେବେଳେ ଥରୁଥିଲେ ଭୟରେ । ମହଲ ଭିତରେ ଏତେ ସାବଧାନ ହୋଇ ପହରା ଦେବା ସତ୍ତ୍ୱେ କିପରି ଚୋରି ହେଲା ତାହାହିଁ ଆଶ୍ଚର୍ଯ୍ୟଜନକ ।

ସୁଲତାନ୍ ସଚିବମାନଙ୍କୁ ଡାକି ଗର୍ଜନ କରି କହିଲେ, "ଏହା ଦ୍ୱାରା ପ୍ରମାଣ ହେଉଛି ଯେ ସଚିବମାନେ ଅନ୍ଧ ଓ ସୁଲତାନ ମୂର୍ଖ । ଯଦି ଏତେ କଟକଣା ଟପି ଚୋର ରାଜମହଲ ଭିତରେ ପ୍ରବେଶ କରିପାରିଲା ତେବେ ରାଜ୍ୟର ଅବସ୍ଥା କ'ଣ ହେଉଥିବ ?"

ସେ ସୁରକ୍ଷା ସଚିବଙ୍କୁ କହିଲେ, "ମନେରଖ, ଯଦି ଚବିଶଘଣ୍ଟା ମଧ୍ୟରେ ଜିନିଷ ସହିତ ଚୋରକୁ ଧରି ନପାର, ତେବେ ତମ ସମସ୍ତଙ୍କୁ ଫାଶୀ ଦିଆଯିବ । ମୁଁ ଜାଣେ ତମେମାନେ କିପରି ଭାବରେ ଚୋର ଧରିଥାଅ । ରାସ୍ତାରେ ବୁଲୁଥିବା କୌଣସି ଭିକାରିକୁ ଧରି ଆଣି ତାକୁ ଭୁଛାଟାରେ ପିଟାପିଟି କରି କୁହ ଯେ ସେ ଚୋର । ଚୋର ତେଣେ ମାମୁଁ ଘରେ ହୁଏତ ବସିଥିବ । ସେଥିପାଇଁ କହୁଛି ଜିନିଷପତ୍ର ସହ ଚୋର ଧରିବ ।"

ସଚିବମାନେ ରାଜାଙ୍କର ଏସବୁ କଥା ଶୁଣି ଡରିଗଲେ । ଯାହାହେଉ ଏକାଠି ମିଳିମିଶି ଚୋର ଧରିବାକୁ ଯିବାକୁ ବାହାରିଲେ । ପ୍ରଧାନ ସଚିବ ଅନ୍ୟ ସଚିବମାନଙ୍କୁ ନିର୍ଦ୍ଦେଶ ଦେଲେ କି ସମସ୍ତେ ବେଶ ବଦଳାଇ ନଗରର ଚାରିଆଡ଼କୁ ଯାଇ ଚୋର ଖୋଜିବେ ଓ କିଛି ସମୟ ପରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ମିଳିତ ହେବେ ।

ରହମତ ଖାଁ ନାମରେ ଜଣେ ସଚୀବ ଭିକାରି ରୂପ ନେଇ ଉତ୍ତର ଦିଗକୁ ଗଲେ । ସେ ବହୁତ ବାଟ ଚାଲି ଚାଲି ବହୁତ ଥକି ପଡିଲେ ଓ ତାଙ୍କୁ ଖୁବ୍ ଶୋଷ ହେଲା । ଚାରିଦିଗକୁ ଅନାଇ ସେ ଦେଖିଲେ ନିକଟରେ ଗୋଟିଏ ଉଦ୍ୟାନ ଅଛି ଓ ତହିଁ ମଧ୍ୟରେ ଏକ ସୁନ୍ଦର ପୁଷ୍କରଣୀ । ସେ ସେଠାକୁ ଯାଇ ପାଣି ପିଇଲେ ।

ସେ ପାଣି ପିଇବାର ଦେଖି ଉଦ୍ୟାନ ଜଗୁଆଳ ଦୌଡ଼ି ଆସି କିଛି ନ ପଚାରି ତାଙ୍କୁ ମାରିବାକୁ ଆରମ୍ଭ କଲା । ଦୁଇଚାରିଟା ଥାପଡ଼ ଦେଇ ତାଙ୍କୁ କହିଲା, "ଆରେ ମୂର୍ଖ, ଚୋର ପରି କ'ଣ ଲୁଚି ଲୁଚି ଏଠି ପଶିଛୁ ! କାହାକୁ ପଚାରି ଆସିଛୁ ? ଆଜିକାଲି ସବୁ ବଡ଼ ବଡ଼ ଚୋରମାନେ ତୋ'ପରି ଭିକାରି ବେଶ ଧରି ବୁଲୁଛନ୍ତି ।"

ରହମତ ଖାଁ ସୁରକ୍ଷା ସଚୀବ ହେଲେ ମଧ୍ୟ ନିଜର ପରିଚୟ ଦେଲେ ନାହିଁ । ତେଣୁ ସେ ମାଡ଼ ଖାଇ ମଧ୍ୟ ଚୁପ୍ ରହିଗଲେ । ତା'ପରେ ଧୀରେ ଧୀରେ କହିଲେ, "ମୁଁ କୌଣସି ଚୋର ବା ଡାକୁ ନୁହେଁ । ଏକ ସାଧାରଣ ଭିକାରି । ବହୁତ ଶୋଷ ହେବାରୁ ତୋପେ ପାଣି ପିଇବାକୁ ଏଠାକୁ ଚାଲି ଆସିଥିଲି । ତେଣୁ ଦୟାକରି ମୋତେ ମାରନ୍ତୁ ନାହିଁ ।"

"ଓ ଆଚ୍ଛା, ଏମିତି କଥା ?" କହି ଜଗୁଆଳି ଆଉ ଦୁଇଚାରିଟା ଥାପଡ଼ ମାରିଲା ।

"ଆଚ୍ଛା ତମେ ମତେ ମାରୁଛ ଏତେ କାହିଁକି ? କ'ଣ ପାଣି ଟୋପାଏ ପିଇବା



ଏତେ ଅପରାଧ ? ପୁଣି ଏପରି ଜଣେ ଲୋକକୁ ମାରିବାର ଅଧିକାର କିଏ ତୁମକୁ ଦେଲା ? ଯଦି ତମେ ମୋତେ ଚୋର ବୋଲି ଭାବୁଛ ତ ତେବେ ମୋତେ ସୁରକ୍ଷା ସଚୀବଙ୍କ ପାଖକୁ ନେଇଚାଲ । ସତମିଛ ବିଚାର କରି ସେ ହିଁ ମୋତେ ଦଣ୍ଡ ଦେବେ ।”

ଏକଥା ଶୁଣି ସେ ଆହୁରି ରାଗିଗଲା ଓ କହିଲା, “ତୁ ମତେ ଆଇନ୍ କାନୁନ୍ ଶିଖାଇବାକୁ ଏଠାକୁ ଆସିଛୁ, ନୁହେଁ ?” ତା’ପରେ ଦୁଇ ଧକ୍‌କା ଦେଇ ତାଙ୍କୁ ସେଠାରୁ ବାହାର କରିଦେଲା ।

ରହମତ୍ ଫାଟକ ବାହାରେ ଅନେକ ସମୟ ଧରି ପଡ଼ି ରହିଲେ । ଉଠିବା ଭଳି ବଳ ନଥାଏ । ସେ ମନେ ମନେ ଭୀଷଣ ଦୁଃଖ ଅନୁଭବ କରୁଥାନ୍ତି । ଛଦ୍ମବେଶରେ ଥିବା ଯୋଗୁଁ ସିନା ଏତେ ହିନସ୍ତା ହେବାକୁ ପଡିଲା ! କିନ୍ତୁ ସେ ଜଗୁଆଳ କାହିଁକି ତାଙ୍କ ପ୍ରତି ଏତେ ନିଷ୍ଠୁର ଆଚରଣ କଲା ? ବିନା କାରଣରେ ଜଣେ ଜଣେ କାହିଁକି ଏପରି ନିର୍ମମ ହୁଅନ୍ତି ? ସେମାନଙ୍କୁ କ’ଣ ବିଧାତା କୌଣସି ଶାସ୍ତି ଦେବନାହିଁ ? ଅବଶେଷରେ ସେ ଉଠି ଠିଆହେଲେ ଓ ଚାଲିବାକୁ ଲାଗିଲେ ।

ସେଠାରୁ ରହମତ ଆସି ଯ୍ଯାଡ଼େସାଡ଼େ ଠିକ୍‌ଏ ବୁଲାବୁଲି କରି ନିର୍ଦ୍ଦିଷ୍ଟ ସମୟରେ ଓ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚିଲେ । ଅନ୍ୟ ସଚୀବମାନେ ମଧ୍ୟ ଆସି ସେଠି ପହଞ୍ଚିଲେ । ରହମତଙ୍କ ଅବସ୍ଥା ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, “କଥା କ’ଣ, ଏପରି



ଅବସ୍ଥା କିମିତ ହେଲ ?" ତା'ପରେ ରହମତ ତାଙ୍କର ସମସ୍ତ ଅନୁଭୂତ ବର୍ଣ୍ଣନା କଲେ । ଶୁଣି ଶୁଣି ସେମାନେ ରାଗରେ ଲାଲ୍ ହୋଇଗଲେ । ସମସ୍ତେ ପୋଷାକ ବଦଳାଇ ଏକାଠି ସେହି ଉଦ୍ୟାନକୁ ଗଲେ ।

ସେମାନେ ସେଠାରେ ପହଞ୍ଚି ଦୂରରୁ ଦେଖିଲେ ସେହି ଜଗୁଆଳି ଗୋଟିଏ ଦଶବର୍ଷର ବାଳକକୁ କ'ଣ ସଂକେତ କରି କହୁଛି । ସେମାନେ ଏକାବେଳେ ଜଗୁଆଳିକୁ ଆକ୍ରମଣ କରି ବହୁତ ପିଟିଲେ । ଏପରି ପିଟା-ପିଟି ଦେଖି ବାଳକଟି ଭୟରେ ଥରି ଥରି କହିଲା, "ହଜୁର୍ ମୋ ମାମୁଁଙ୍କୁ ମାରନ୍ତୁ ନାହିଁ । ସେ ଚୋରି କରି ଯାହା ସବୁ ଆଣିଛି ସବୁ ମୁଁ ଦେଇ ଦେଉଛି ।"

ସନ୍ତ୍ରୀମାନେ ବାଳକର କଥା ଶୁଣି ଖୁବ୍ ଖୁସି ହେଲେ ଓ ପଚାରିଲେ, "କାହିଁ, ଜିନିଷ କେଉଁଠି ଅଛି, ଶୀଘ୍ର କହ ।" ବାଳକଟି ସେମାନଙ୍କୁ ଉଦ୍ୟାନ କୋଣରେ ଥିବା ଏକ ଫୁଲଗଛ ନିକଟକୁ ନେଇଗଲା । ସେଇଠାରେ ଖୋଳିବାରୁ ରାଜାଙ୍କ ନଗରରେ ହୋଇଥିବା ଚୋରିର ସବୁ ଜିନିଷ ମିଳିଲା । ସମସ୍ତେ ଖୁସି ହେଲେ ।

ରହମତ ଜଗୁଆଳିକୁ ଗାଳିଦେଇ କହିଲେ, "ଯଦି ତୁ ଆଜି ଜଣେ ତୃଷାର୍ତ୍ତ ଗରିବ ଲୋକକୁ ବାଡ଼େଇ ନଥା'ନ୍ତୁ ତେବେ ହୁଏତ ତୋର ଚୋରି ଧରାପଡ଼ି ନଥାନ୍ତା । ମନେହୁଏ କୌଣସି ପିଶାଚର ପ୍ରରୋଚନାରେ ତୁ ରାଜ-ନଗରରୁ ଚୋରି କରି ଓ ତୃଷାର୍ତ୍ତ ଲୋକକୁ ମାରିବା ଭଳି କୁକର୍ମ କରି ।"

ଏକଥା ଶୁଣି ଚୋର ରହମତଙ୍କୁ ଭଲଭାବରେ ଚିହ୍ନିଲା ଓ ଚକ୍ଷୁପାଣି ଅନୁତାପ କଲା । ଚୋରକୁ ସବୁ ଚୋରିମାଲ ସହ ସନ୍ତ୍ରୀମାନେ ସୁଲତାନଙ୍କ ପାଖରେ ପହଞ୍ଚାଇଲେ । ସୁଲତାନ ରହମତଙ୍କୁ ଓ ଅନ୍ୟ ସନ୍ତ୍ରୀମାନଙ୍କୁ ବହୁତ ପୁରସ୍କାର ଦେବା ସଙ୍ଗେ ତାଙ୍କର ପଦୋନ୍ନତି ମଧ୍ୟ କରାଇ ଦେଲେ ।



# ଦୁଇ ମୂର୍ଖ ବ୍ୟବସାୟୀ

ଅନୁପଗଡ଼ର ଜମିଦାର ବଡ଼ ଦୟାଳୁ ଥିଲେ । ସେ ଦରିଦ୍ର ବ୍ୟବସାୟୀମାନଙ୍କୁ ଟଙ୍କା କରଜ ଦିଅନ୍ତି । କିନ୍ତୁ ଟଙ୍କା ଦେବା ପୂର୍ବରୁ ଲୋକଟିର ବ୍ୟବସାୟୀବୁଦ୍ଧି ଅଛି ନା ନାହିଁ ସେ ପରୀକ୍ଷା କରନ୍ତି । ଯଦି ତାଙ୍କର ବିଶ୍ୱାସ ହୁଏ ଯେ ସେହି ବ୍ୟକ୍ତି ବ୍ୟବସାୟ କଲେ ସଫଳ ହେବ ତେବେ ଯାଇ ସେ ଋଣ ଦିଅନ୍ତି ।

ଦିନେ ତାଙ୍କଠାରୁ ଋଣ ନେବା ପାଇଁ ଦୁଇଜଣ ମୂର୍ଖ ବ୍ୟବସାୟୀ ଆସିଲେ । ସେମାନେ ଜମିଦାରଙ୍କୁ ଅନୁରୋଧ କରି କହିଲେ, "ମହାଶୟ, ଆମେ ଦୁହେଁ ଅଣ୍ଡା ବ୍ୟବସାୟ କରିବାକୁ ଚାହୁଁ । ନିହାତି କମ୍‌ରେ ହଜାରେ ଟଙ୍କା ପୁଞ୍ଜି ଦରକାର ।"

ଜମିଦାର ଜାଣିବାକୁ ଚାହୁଁଥିଲେ ଅଣ୍ଡା ବିଷୟରେ ଏମାନଙ୍କ ଜ୍ଞାନ କେତେଦୂର । ତେଣୁ ସେ ସେମାନଙ୍କୁ ପଚାରିଲେ, "ଆଚ୍ଛା ତମେ ଅଣ୍ଡା ବିଷୟରେ ନ ଜାଣ କ'ଣ କୁହ ।"

"ମହାଶୟ, ମୁଁ ଆଜି ପର୍ଯ୍ୟନ୍ତ ବୁଝିପାରିଲି ନାହିଁ ଯେ ଅଣ୍ଡା ଭିତରେ ପାଣି, ପବନ ବା ଆଲୋକ ନ ଥିବା ସତ୍ତ୍ୱେ ଛୁଆ କିପରି ବଞ୍ଚିପାରୁଛି !" ପ୍ରଥମ ମୂର୍ଖ ବ୍ୟବସାୟୀ କହିଲା ।

"କିନ୍ତୁ ତା' ଠାରୁ ଅଧିକ ଆଶ୍ଚର୍ଯ୍ୟର କଥା ହେଉଛି ଛୁଆ ବାହାରକୁ ଆସିବାକୁ ହେଲେ ଅଣ୍ଡାକୁ ଫୁଟାଇବାକୁ ପଡ଼େ, କିନ୍ତୁ ଅଣ୍ଡା ନ ଭାଙ୍ଗି ସେ କିପରି ଭିତରେ ପଶିଲା ?" ଦ୍ୱିତୀୟ ମୂର୍ଖ ବ୍ୟବସାୟୀ କହିଲା ।

ଏସବୁ ଶୁଣି ଜମିଦାର ଅଳ୍ପ ହସି କହିଲେ, "ତମେ ବ୍ୟବସାୟରେ ସଫଳ ହେବନାହିଁ । ତେଣୁ ମାତ୍ର ଦୁଇଶ ଟଙ୍କା ଦେଉଛି, ନେଇ ଚେଷ୍ଟା କର ।" ନିଜ ଦୟାଳୁ ସ୍ୱଭାବରୁ ଟଙ୍କା ସିନା ଦେଇଦେଲେ କିନ୍ତୁ ମନେ ମନେ ଭାବୁଥିଲେ "ଏ ଟଙ୍କା ପାଣିରେ ପଡ଼ିଲା ।"



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



Devidas Kasbekar



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୁଟି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

## ଜୁଲାଇ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ବଡ଼ ସକାଳରୁ ଆସି ମୁଁ ଖଟୁଛି, ଝିଅ ତେଣେ ଥିବ ଉପାସ ରହି !
ଦ୍ୱିତୀୟ ଚିତ୍ର : ରହି ବସି ସବୁ ପାଇଛି ସାରିବ, ମା' ତ ଫେରିବ ହାଇଆ ହୋଇ !!
ପୁରସ୍କାର ବିଜୟୀ : ଭରତ କିଙ୍କର ଦାସ, କମର୍ଦ୍ଦା ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. ସେଣ୍ଟ୍ ଥୋମାସ୍ । ୨. ଜୈନଧର୍ମ । ୩. ନାଳନ୍ଦା । ୪. ଜେନ୍ଦ୍ ଆଭେସ୍ତା ।
୫. ସସାରେ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

ପ୍ରବେଶିକା ଶୁଳ୍କ ବିହୀନ

# ଚନ୍ଦାମାମୁଁ କ୍ୟାମେଲ

## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଜିତନ୍ତୁ**
**କ୍ୟାମେଲ**

ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ୱିତୀୟ ପୁରସ୍କାର ଟ. ୧୦/-
୧୦ ତୃତୀୟ ପୁରସ୍କାର ଟ. ୫/-
୧୦ ସାର୍ଟିଫିକେଟ



ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ୱାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ—ପୋ.ବକ୍ସ ନ.୧୧୫୦୧,ନରୀମ୍ୟାନ ପଏଣ୍ଟ ପୋଷ୍ଟ ଅଫିସ, ବମ୍ବେ ୪୦୦ ୦୨୧ ବିଗ୍ଭରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name:........................................................................ Age:..............................

Address:..........................................................................................................

# LIKE TO FLY INTO THE EXCITING WORLD OF ADVENTURE AND HUMOUR?



DOLTON

SUPER COMICS
CAN TAKE YOU THERE
EVERY FORTNIGHT!

IT COSTS ONLY Rs. 2.50 A COPY-
EVIDENTLY THE MOST EASILY
AVAILABLE COMICS MAGAZINE
YOU'VE EVER READ:

ITS 36 FULL COLOUR PAGES TAKE YOU
THROUGH MYSTERY AND EXCITEMENT T
RENDEZVOUS WITH THE SUPER HEROES-

SUPERMA

